# ଅଭିମନ୍ୟୁ ସାମନ୍ତ ସିଂହାର



ଡକ୍ଟର ରାମଚନ୍ଦ୍ର ମହାନ୍ତି

# ଅଭିମନ୍ୟୁ ସାମନ୍ତସିଂହାର

ଡକ୍ଟର ରାମଚନ୍ଦ୍ର ମହାନ୍ତି

ଗ୍ରନ୍ଥକାରଣୀ ପ୍ରକାଶିନୀ
ବି. ଜେ. ବି. ନଗର, ଭୁବନେଶ୍ୱର-୧୪

# ଅଭିମନ୍ୟୁ ସାମନ୍ତସିଂହାର

ଲେଖକ:

**ଡଃ: ରାମଚନ୍ଦ୍ର ମହାନ୍ତି**

(ଭାରତ ସରକାରଙ୍କ ଠାରୁ ପୁରସ୍କାର ପ୍ରାପ୍ତ)

ପ୍ରକାଶକ:

**ରାକାରାଣୀ ପ୍ରକାଶନୀ**

ବି. ଜେ. ବି. ନଗର

ଭୁବନେଶ୍ୱର ୧୪

ପ୍ରଥମ ପ୍ରକାଶ:

ଫେବୃୟାରୀ ୧୯୮୯

ମୁଦ୍ରଣ:

କଲ୍ୟାଣୀ ପ୍ରେସ୍

ବାପୁଜୀ ନଗର, ଭୁବନେଶ୍ୱର

ମୂଲ୍ୟ : ପାଞ୍ଚଟଙ୍କା ମାତ୍ର

## "ବରେଣ୍ୟ ବିଦଗ୍ଧ" କବି

### ଅଭିମନ୍ୟୁ ସାମନ୍ତ ସିଂହାର



| ଆବିର୍ଭାବ | ତିରୋଧାନ |
|---|---|
| ତା ୧୩।୨।୧୭୬୦–ମାଘ ଶୁକ୍ଳ ସପ୍ତମୀ | ୧୮୦୬ ଜ୍ୟେଷ୍ଠ କୃଷ୍ଣ ସପ୍ତମୀ |

# ଅଭିମନ୍ୟୁ ସାମନ୍ତସିଂହାର

କଥିତ ଅଛି ଯେ, ପୃଥିବୀରେ ଭାରତ ଶ୍ରେଷ୍ଠ ଓ ଭାରତରେ ଉତ୍କଳ ଶ୍ରେଷ୍ଠତମ । ପୁଣ୍ୟଭୂମି ଭାରତରେ ଉତ୍କଳ ହେଉଛି ପୁଣ୍ୟତମ ।

ଆମର ଏଇ ପୁଣ୍ୟତମ ଭୂମି ଉତ୍କଳରେ ବହୁ କବି, ଶିଳ୍ପୀ ସାଧକ ଜନ୍ମ କରି ସେମାନଙ୍କ ଯଶକୀର୍ତ୍ତିରେ ଏ ଜାତିକୁ ଗୌରବମଣ୍ଡିତ କରିଛନ୍ତି । ମାଟିର ଘଟ ସିନା ମାଟିରେ ମିଶି ଯାଇଛି, କିନ୍ତୁ ସେମାନଙ୍କର ଅମ୍ଳାନ, ଅତୁଳନୀୟ ପ୍ରତିଭା ସେମାନଙ୍କୁ ଚିରଦିନ ପାଇଁ ଅମର କରି ରଖିଅଛି । କବି ଅଭିମନ୍ୟୁ ସାମନ୍ତସିଂହାର ହେଉଛନ୍ତି ସେହିପରି ଜଣେ ଯୋଗଜନ୍ମା କବି । ୧୭୬୦ ଖ୍ରୀଷ୍ଟାବ୍ଦ ପବିତ୍ର ମାଘ ଶୁକ୍ଳ ସପ୍ତମୀ ତିଥିରେ



କବି ଅଭିମନ୍ୟୁ କଟକ ଜିଲ୍ଲା ଯାଜପୁର ସବ୍-ଡିଭିଜନର ବାଲିଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେହି ଦିନଟି ଥିଲା ଫେବୃଆରୀ ମାସ ୨୩ ତାରିଖ ଶନିବାର ।

କବିଙ୍କ ଜୀବନୀ ଆଲୋଚନା କଲାବେଳେ ଆମକୁ ବହୁ କିମ୍ବଦନ୍ତୀର ଆଶ୍ରୟ ନେବାକୁ ପଡ଼ିଥାଏ । କେହି କେହି କହନ୍ତି ଯେ, କବିଙ୍କ ପୂର୍ବ ପୁରୁଷ ରାଜସ୍ଥାନର ଭାବନଗରରୁ ଓଡ଼ିଶାକୁ ଆସିଥିଲେ ।

କବିଙ୍କ ପୂର୍ବ ପୁରୁଷ କାଳୀ ସିଂ ଭାବନଗର ରାଜାଙ୍କ କନିଷ୍ଠ ରାଣୀଙ୍କ ପୁତ୍ର ହୋଇଥିବାରୁ ରାଜଗାଦୀରୁ ବିତାଡ଼ିତ ହୋଇ ପୁଅ ବଳୀ ସିଂଙ୍କୁ ସାଙ୍ଗରେ ଧରି ଓଡ଼ିଶା ଆସିଥିଲେ ଏବଂ ଗଜପତି ରାଜା ପୁରୁଷୋତ୍ତମ ଦେବଙ୍କ ଆଶ୍ରୟ ଲାଭ କରିଥିଲେ । ସେ ରାଜଦରବାରରେ ଈର୍ଷା ଭାବରୁ ମୁକ୍ତ ହେଲେ । ବାପ ପୁଅ ଦୁହେଁ ରାଜାଙ୍କର ଅତି ବିଶ୍ୱାସୀ ଥିଲେ । କିନ୍ତୁ ଥରେ ରାଣୀଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରିବାକୁ ଯାଇ ଦୁହେଁ ରାଜା ରାଣୀଙ୍କ ସନ୍ଦେହ ଭାଜନ ହେଲେ । ଫଳରେ ବିତାଡ଼ିତ ହୋଇ ସେଠାରୁ ଚାଲିଗଲେ । ସେଠାରୁ ଯାଇ ବ୍ରାହ୍ମଣୀ ନଦୀ କୂଳରେ ବାସ କଲେ । ପରବର୍ତ୍ତୀ ସମୟରେ ଗଜପତି ରାଜା ନିଜର ଭୁଲ୍ ବୁଝିପାରି ସେଠାରେ ରହିବାକୁ ସେମାନଙ୍କୁ ସବୁମତେ ସାହାଯ୍ୟ କଲେ ।

ତାର କିଛୁଦିନ ପରେ କାଳୀ ସିଂ ବାଲିଆର ରାଜା ସାଙ୍ଗେ ଦଳାଇଙ୍କୁ ପରାଜିତ କରି ରାଜଗାଦିରେ ଆସୀନ ହେଲେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତ ଅନୁସାରେ ସେ ଖୋର୍ଦ୍ଧାର ଭୋଇ ବଂଶର ରାଜାଙ୍କ ଠାରୁ ବାଲିଆ ଜମିଦାରୀ ପ୍ରାପ୍ତ ହୋଇଥିଲେ । ତେବେ କବିଙ୍କ ବଂଶଧରମାନେ ରାଜସ୍ଥାନରୁ ନ ଆସି ଉତ୍ତର ପ୍ରଦେଶର ବୁନ୍ଦେଲଖଣ୍ଡରୁ ଆସିଥିଲେ ବୋଲି ଡକ୍ଟର ମାୟାଧର ମାନସିଂହ କହିଛନ୍ତି । ପଣ୍ଡିତ ବିନାୟକ ମିଶ୍ର ଓ ଶ୍ରୀ ସୁରେନ୍ଦ୍ର ମହାନ୍ତି ମତ ଦିଅନ୍ତି ଯେ, କବିଙ୍କ ବଂଶଧରମାନେ ଖାଣ୍ଟି ଓଡ଼ିଆ ଖଣ୍ଡାୟତ ।

କବିଙ୍କ ପୂର୍ବପୁରୁଷ ରାଜସ୍ଥାନବାସୀ କି ଉତ୍ତର ପ୍ରଦେଶବାସୀ କି ଖାଣ୍ଟି ଓଡ଼ିଆ ଖଣ୍ଡାୟତ ତାହା ବଡ଼ କଥା ନୁହେଁ, ବଡ଼କଥା ହେଲା ଉତ୍କଳ ମାଟିରେ ଜନ୍ମଗ୍ରହଣ କରିଥିବା କବି ଅଭିମନ୍ୟୁ ସାମନ୍ତସିଂହାର ସର୍ବାନ୍ତ-

କରଣରେ ଉତ୍କଳୀୟ ଓ ଉତ୍କଳ ଭାରତୀଙ୍କ ମଥା **କଣ୍ଠି**—ସମସାମୟିକ କବିମାନଙ୍କଠାରୁ ବଳି ପ୍ରତିଷ୍ଠାପନ୍ନ । ତଥାପି କବିଙ୍କ ସମ୍ବନ୍ଧରେ ସମ୍ୟକ୍ ଧାରଣା ଦେବା ଉଦ୍ଦେଶ୍ୟରେ କବିଙ୍କ ବଂଶ ପରମ୍ପରାର ଉଲ୍ଲେଖ ନିମ୍ନରେ ଦିଆଗଲା ।—

କାଳୀ ସିଂ
|
ବଳୀ ସିଂ
|
ଯୋଦ୍ଧ ସିଂ
|
ଗଣପତି ସାମନ୍ତସିଂହାର
|
ଆରତି ସାମନ୍ତସିଂହାର
|
ଆରଣି ( ଟିକାଲ ) ସାମନ୍ତସିଂହାର
|
ପରମାନନ୍ଦ ସାମନ୍ତସିଂହାର
|
ଖୋଯାଳ ସାମନ୍ତସିଂହାର
|
ଇନ୍ଦ୍ରଜିତ ସାମନ୍ତସିଂହାର
|
ଅଭିମନ୍ୟୁ ସାମନ୍ତସିଂହାର

କାଳୀ ସିଂହଙ୍କ ଠାରୁ ଗଣପତି ସାମନ୍ତସିଂହାରଙ୍କ ପର୍ଯ୍ୟନ୍ତ ଏହି ବଂଶ ଗୋଳକୁଣ୍ଡରେ, ଆରତି ସାମନ୍ତସିଂହାରଙ୍କ ଠାରୁ ଖୋଯାଳ ସାମନ୍ତସିଂହାରଙ୍କ ପର୍ଯ୍ୟନ୍ତ ହରିପୁରରେ ଓ ଇନ୍ଦ୍ରଜିତ ସାମନ୍ତସିଂହାରଙ୍କ ଠାରୁ ଏହି ବଂଶ ବାଲିଆଟରେ ଅବସ୍ଥାନ କରି ଆସୁଥିବା ତଥା ଲେଖକ-

ମୁଖରୁ ଶୁଣାଯାଏ । ଏହି ବଂଶର ଗଣପତି ସିଂ ମୋଗଲ ବାହିନୀ ସଙ୍ଗେ ଯୁଦ୍ଧ କରି ସର୍ତ୍ତ ସ୍ୱରୂପ ବାଲିଆ ସନ୍ନିକଟ ଛଅଟି ତପ୍ପାର ସାମନ୍ତମାନଙ୍କୁ ମୁକ୍ତ କରିଥିଲେ । ଏହି ସାମନ୍ତଗଣ ତାଙ୍କୁ ସାମନ୍ତସିଂହାର ପଦବୀରେ ଭୂଷିତ କରିଥିଲେ । ସେହି କାଳରୁ ଅଦ୍ୟାବଧି ଏହି ବଂଶର ଜ୍ୟେଷ୍ଠପୁତ୍ର ଉତ୍ତରାଧିକାର ସୂତ୍ରରେ ସାମନ୍ତସିଂହାର ଉପାଧି ଧାରଣ କରି ଆସୁଛନ୍ତି ।

ଏହି ସାମନ୍ତ ସିଂହାର ଉପାଧି ପ୍ରାପ୍ତି ସମ୍ପର୍କରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କହନ୍ତି— ସେତେବେଳେ ସେ ଅଞ୍ଚଳରେ ବରପଦା ପ୍ରଭୃତି ନାମରେ



ସାତଟପା ଥିଲା । ଏହି ସାତଟପାରେ ରଣସିଂହ ମହାପାତ୍ର, ଦକ୍ଷିଣରାୟ ମହାପାତ୍ର ପ୍ରଭୃତି ଭୂଇଁଆନ ରାଜୋପାଧିଧାରୀ ସାମନ୍ତମାନେ ପ୍ରଭୁତ୍ୱ କରୁ-ଥିଲେ । ଅଭିମନ୍ୟୁଙ୍କ ପୂର୍ବ ପୁରୁଷ ଏହି ସାମନ୍ତମାନଙ୍କ ମଧ୍ୟରେ ଗଣ୍ୟ ହେଉ ନଥିଲେ ହେଁ ଏକ ସମୟ ସେ ବଂଶର ଜଣେ କେହି ଅପର ସାତ ସାମନ୍ତଙ୍କୁ ଗୋଟିଏ ମହାବିପଦରୁ ବୁଦ୍ଧି ବଳରେ ରକ୍ଷା କରିଥିଲେ ।

ସେଥିରେ ସାମନ୍ତମାନେ ସନ୍ତୁଷ୍ଟ ହୋଇ ତାହାଙ୍କୁ ସାମନ୍ତସିଂହାର ଅର୍ଥାତ୍ ସାମନ୍ତଭୂଷଣ ଉପାଧି ପ୍ରଦାନ କଲେ ।

କବିଙ୍କର ପିତା ଇନ୍ଦ୍ରଜିତ ସାମନ୍ତସିଂହାର ରସିକ, ଧାର୍ମିକ ଓ ବୀର ଥିଲେ । ତାଙ୍କର ଏକାଧିକ ପତ୍ନୀ ଥିଲେ । କିନ୍ତୁ କୌଣସି ପତ୍ନୀଙ୍କର ସନ୍ତାନ ସନ୍ତତି ନଥିବାରୁ କୁଳରକ୍ଷା ପାଇଁ ଇନ୍ଦ୍ରଜିତ ସାମନ୍ତସିଂହାର ଅଷ୍ଟମ ପତ୍ନୀ ଗ୍ରହଣ କରିଥିଲେ । ଏହି ଅଷ୍ଟମ ପତ୍ନୀଙ୍କ ନାମ ଥିଲା ତୁଳସୀ ଦେବୀ । ତୁଳସୀ ଦେବୀଙ୍କୁ ବିବାହ ହୋଇ ମଧ୍ୟ ଇନ୍ଦ୍ରଜିତଙ୍କ ମନସ୍କାମନା ପୂର୍ଣ୍ଣ ହେଲା ନାହିଁ । ସେ ଖୁବ୍ ଚିନ୍ତିତ ହୋଇପଡ଼ିଲେ । ଏହି ଦୁଃଖ ସମୟରେ ଇନ୍ଦ୍ରଜିତ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ପାଦଚର୍ଯ୍ୟରେ ଆସିଥିଲେ । କବିସୂର୍ଯ୍ୟ ବ୍ରହ୍ମା ଥିଲେ ପରମ ବୈଷ୍ଣବ । ତାଙ୍କର ପରାମର୍ଶ ଅନୁସାରେ ଇନ୍ଦ୍ରଜିତ ଏକ ଯଜ୍ଞାନୁଷ୍ଠାନର ଆୟୋଜନ କଲେ । ଉତ୍କଳ ସାହିତ୍ୟରେ ଲେଖାଅଛି— ଯଜ୍ଞାନ୍ତେ ସାମନ୍ତଙ୍କର ଅଷ୍ଟମା ପତ୍ନୀ ଦେଖିଲେ ଯେ, ଜଣେ ବିଷ୍ଣୁଭକ୍ତ ଦିବ୍ୟପୁରୁଷ ତାଙ୍କ ହାତରେ ତୁଳସୀ ମାଳା ଓ ଚନ୍ଦନ ଦେଇ ଅନ୍ତର୍ହିତ ହୋଇଗଲେ । ଏହି ସ୍ୱପ୍ନ ଦର୍ଶନ ପରେ ତୁଳସୀମାଳା-ଧାରିଣୀ ଜନନୀ ଗର୍ଭଧାରଣ କଲେ । ଜନ୍ମ ହେଲେ ଆମର ବରେଣ୍ୟ କବି ଅଭିମନ୍ୟୁ ସାମନ୍ତସିଂହାର । ଅଭିମନ୍ୟୁଙ୍କ ପରେ ଇନ୍ଦ୍ରଜିତ ଦ୍ୱିତୀୟ ପୁତ୍ର ଲାଭ କରିଥିଲେ । ତାଙ୍କର ନାମ ଥିଲା ସୁରଥ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା କବି ଅଭିମନ୍ୟୁଙ୍କର ବାଲ୍ୟଗୁରୁ ଥିଲେ । ତତ୍କାଳୀନ ପ୍ରଥା ଅନୁସାରେ କବି ସଂସ୍କୃତ, ଗଣିତ, ଜ୍ୟୋତିଷାଦି ଶାସ୍ତ୍ର ଉତ୍ତମ ରୂପେ ଅଧ୍ୟୟନ କରିଥିଲେ । ମାମୁଁ ଘରେ ରହିବା କାଳରେ ଚକ୍ରଧର ନାୟକଙ୍କ ଠାରୁ ସଂସ୍କୃତ ଶିକ୍ଷା କରିଥିଲେ ।

ବାଲ୍ୟକାଳରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କୁ ଗୁରୁ ରୂପେ ପାଇ-ଥିବାରୁ କବି ବହୁ ଶାସ୍ତ୍ର ପୁରାଣ ପାଠ କରିଥିବାର ସୁଯୋଗ ପାଇଥିଲେ । କେବଳ ସେତିକି ନୁହେଁ, କବିସୂର୍ଯ୍ୟ ବ୍ରହ୍ମାଙ୍କ ଦ୍ୱାରା ପ୍ରଭାବିତ ହୋଇ

ସେ ରାଧା-କୃଷ୍ଣ ଲୀଳାତ୍ମକ ଗ୍ରନ୍ଥମାନ ପାଠ କରିଥିଲେ ଓ କୃଷ୍ଣ କଥା ରଚନା କରିବାକୁ ମନ ବଳାଇ ଥିଲେ । ଫଳରେ ନଅବର୍ଷ ବୟସରେ ତାଙ୍କ ଲେଖନୀରୁ ନିଃସୃତ ହୋଇଥିଲା :—

କରମଙ୍ଗା ଗଛ ଘଇ ଗୋ
ମୋର ହୁଁ ଗୋ
କରମ ଯାହାର ସଫଳ ହୋଇବ
କୃଷ୍ଣଙ୍କୁ ଲଭିବ ସେହି ଗୋ
ମୋର ହୁଁ ଗୋ ।

ମଣିଷ ସଂଗ ଗୁଣରେ ଗୁଣୀ ବା ସଙ୍ଗଦୋଷରେ ଅଜ୍ଞାନୀ ବା ମୂର୍ଖ ହୋଇଥାଏ । କବିସୂର୍ଯ୍ୟ ବ୍ରହ୍ମାଙ୍କ ସାହଚର୍ଯ୍ୟରେ ଆସି ଅଭିମନ୍ୟୁ ଜଣେ କବି ହେବାପାଇଁ ଦୃଢ ପ୍ରତିଜ୍ଞ ହୋଇଥିଲେ । ସାଧନାର ସିଦ୍ଧିରେ କବିତ୍ୱ ଶକ୍ତି ଉନ୍ମେଷିତ ହୁଏ — ପ୍ରଚଳିତ ଏହି ପରଂପରାକୁ ଦୃଷ୍ଟିରେ ରଖି ସେ ଜପ ସାଧନ କରିଥିଲେ ।

ଏ ସମ୍ପର୍କରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଉତ୍କଳ ସାହିତ୍ୟରେ ଲେଖିଛନ୍ତି — କଥିତ ଅଛି ଯେ, ନବ-ବର୍ଷ ବୟସରେ ଅଭିମନ୍ୟୁ ଜଣେ ସାଧୁ ବୈଷ୍ଣବଙ୍କର ପାଦସେବା କରି ପ୍ରସାଦ ଭିକ୍ଷା କରିଥିଲେ । ସାଧୁ ସେଥିରେ ସୁପ୍ରସନ୍ନ ହୋଇ ତାଙ୍କୁ କୃଷ୍ଣ ମନ୍ତ୍ରୋପଦେଶ ପ୍ରଦାନ କରିଥିଲେ । ଅଭିମନ୍ୟୁ ଗୃହକୁ ଆସି ସାଧନକୁ ସଂକଳ୍ପ କରି ଯୋଗାସନ ହେଲେ, କିନ୍ତୁ ତୃତୀୟ ଦିନ ତାହାଙ୍କୁ ଆଦେଶ ହେଲା ଯେ, ପୁରୀ ଦେଉଳର ଲକ୍ଷ୍ମୀ ମନ୍ଦିରରେ ଏହି ମନ୍ତ୍ର ଲକ୍ଷେବାର ଜପିଲେ ସିଦ୍ଧି ଲାଭ ହେବ । ତଦନୁସାରେ କବି ଜଗନ୍ନାଥ ମନ୍ଦିରକୁ ଯାତ୍ରା କରି ଯଥାକାଳରେ ତଥା ଜପ ସାଧନ କରନ୍ତେ ହଠାତ୍ ମାଳା ତଳକୁ ଖସି ପଡ଼ିଲା । ତହୁଁ ସେ ଆପଣାକୁ ସିଦ୍ଧ ଜାଣି ସେହି ମାଳା ଗ୍ରହଣ ପୂର୍ବକ ଆଶାପୂର୍ଣ୍ଣ ମନରେ ଗୃହକୁ ପ୍ରତ୍ୟାବର୍ତ୍ତନ

କଲେ । କଥିତ ଅଛି ଯେ ଏହି ମାଳାକୁ ମୃତ୍ୟୁ ପର୍ଯ୍ୟନ୍ତ ଧାରଣ କରିଥିଲେ । ଏହା କାଳରୁ ତାଙ୍କର କବିତ୍ୱ ଶକ୍ତି ଅପୂର୍ବ ଭାବରେ ପ୍ରକଟିତ ହେଲା ।

ଅଭିମନ୍ୟୁଙ୍କ କବିତ୍ୱ ଶକ୍ତି ପ୍ରକଟନ ସମ୍ପର୍କରେ ଅନେକ କିମ୍ବଦନ୍ତୀ ମଧ୍ୟ ଶୁଣିବାକୁ ମିଳେ । ତାଙ୍କୁ ୯।୧୦ ବର୍ଷ ବୟସ ହୋଇଥିବା ବେଳେ ସେ ଜଣେ ବୈଷ୍ଣବଙ୍କୁ ମନ୍ତ୍ର ଉପଦେଶ ମାଗିଥିଲେ । କହିଥିଲେ— ମୋତେ ଏମିତି ମନ୍ତ୍ରୋପଦେଶ ଦିଅନ୍ତୁ ଯାହାଦ୍ୱାରା ମୋର କବିତ୍ୱ ଶକ୍ତି ବିକଶିତ ହେବ । କିନ୍ତୁ ସେପରି କଠୋର ବ୍ରତ ସାଧନ କରିବା ଜଣେ ବାଳକ ପକ୍ଷେ ଅତି କଷ୍ଟକର ହୋଇଥିବାରୁ ସେଥିରୁ ନିବୃତ୍ତ ହେବାକୁ ସେ ଅଭିମନ୍ୟୁଙ୍କୁ ପରାମର୍ଶ ଦେଇଥିଲେ ।

କିନ୍ତୁ ଅଭିମନ୍ୟୁ ଏଥିରେ ସନ୍ତୁଷ୍ଟ ହେବେ ବା କିପରି ? କବି ହେବାପାଇଁ ତାଙ୍କର ବାସନାକୁ ସେ କିପରି ମନରୁ ପୋଛି ଦେବେ ? ବ୍ରତ, ମନ୍ତ୍ର ସାଧନ କରିବା ଯେତେ କଷ୍ଟକର ହେଉନା କାହିଁକି ସେ ତାହା ପାଳନ କରିବେ ।

ଅଭିମନ୍ୟୁଙ୍କର ଏ ପ୍ରକାର ଆଗ୍ରହ ଦେଖି ବୈଷ୍ଣବ ଜଣକ ମନ୍ତ୍ରୋପଦେଶ ଦେବାକୁ ରାଜି ହେଲେ ଓ କହିଲେ—ତୁମେ ଶନିବାର ରୁଦ୍ଧ ପ୍ରକୋଷ୍ଠରେ ଏହା ସାଧନା କରିବ । ଚତୁର୍ଥ ଦିନକୁ ବଞ୍ଚିଥିଲେ ସିଦ୍ଧିଲାଭ ହେବ । ମୃତ୍ୟୁକୁ ଭୟ ନକରି ଅଭିମନ୍ୟୁ ଏହି କଠୋର ବ୍ରତ ପାଳନ କରିଥିଲେ । ଚତୁର୍ଥ ଦିନରେ ଦେଖାଗଲା ଅଭିମନ୍ୟୁ ମୂର୍ଚ୍ଛିତ ହୋଇ ପଡ଼ିଛନ୍ତି । ଅନେକ ଚେଷ୍ଟା ପରେ ତାଙ୍କ ଚେତା ଫେରିଲା ଓ ସେ ରାଧା କୃଷ୍ଣଙ୍କ ଯୁଗଳ ମୂର୍ତ୍ତି ଦର୍ଶନ କରିଥିବା କଥା ପ୍ରକାଶ କଲେ ।

କିମ୍ବଦନ୍ତୀ ଯାହା ହେଉନା କାହିଁକି ଈଶ୍ୱର କୃପା ଭିନ୍ନ ଏମିତି କବିତ୍ୱ-ଶକ୍ତି ସ୍ଫୁରିତ ହେବା ସମ୍ଭବ ନୁହେଁ । ତୁଳସୀ ଦୁଇପତ୍ରରୁ ବାସେ । ଅଭିମନ୍ୟୁ ଯେ ଦିନେ ଜଣେ ମହାନ୍ କବି ହେବେ ଏହା ତାଙ୍କ

ବାଲ୍ୟକାଳରୁ ଜଣା ପଡ଼ିଥିଲା । ବାଲ୍ୟକାଳରେ ସେ ତାଙ୍କର କରମଙ୍ଗା ଛୁଇଁ ଦେ ଗୋ ମୋର ହୁଁ ଗୋ, ବାଘ ଗୀତ ଓ ଚଢ଼ାଇ ଗୀତ ରଚନା କରିଥିଲେ ।

ଚତୁର୍ଦ୍ଦଶ ବର୍ଷ ବୟସରେ କବି ଅଭିମନ୍ୟୁ କେନ୍ଦ୍ରାପଡ଼ାର ସୁପ୍ରସିଦ୍ଧ ଜମିଦାର ଘନଶ୍ୟାମ ନରେନ୍ଦ୍ରଙ୍କ ପରିବାରରେ ବିବାହ କରିଥିଲେ । ତାଙ୍କ ପତ୍ନୀଙ୍କ ନାମ ବିମଳା ଦେବୀ । ବିମଳା ଦେବୀ କେବଳ ସୁନ୍ଦରୀ, ସତୀ, ସାଧ୍ୱୀ ଓ ପତିବ୍ରତା ନଥିଲେ, ସେ ଥିଲେ କୃଷ୍ଣ ଭକ୍ତି ପରାୟଣା, ଭକ୍ତଗତପ୍ରାଣା । ଅଭିମନ୍ୟୁ ନଖାଇବାଯାଏ ସେ ଜଳସ୍ପର୍ଶ କରୁନଥିଲେ । କବି ମଧ୍ୟ ବିମଳା ଦେବୀଙ୍କୁ ଜୀବନଠୁଁ ଅଧିକ ଭଲ ପାଉଥିଲେ । ଥରେ ଅଭିମନ୍ୟୁ ବିମଳା ଦେବୀଙ୍କୁ କହିଲେ—ତମେ ତ ମୋତେ ଦଣ୍ଡେ ନ ଦେଖି ରହିପାରୁନା, ମୁଁ ମରିଗଲେ କଣ କରିବ ?

ସ୍ୱାମୀଙ୍କ ମୁଖରୁ ଏମିତି ଅଶୁଭ କଥା ଶୁଣିବାକୁ କେଉଁ ପତିବ୍ରତା ନାରୀକୁ ବା ଭଲ ଲାଗିବ ? ବିମଳା ଦେବୀ କହିଲେ—ସେ କଥା ଶୁଣିବା ପାଇଁ କଣ ମୁଁ ବଂଚିଥିବି ?

ରସିକ କବି ଅଭିମନ୍ୟୁ ନିଜ ପତ୍ନୀଙ୍କ ଠାରୁ ଏ କଥା ଶୁଣି ତାଙ୍କ ସହ ମଜା, କୌତୁକ କରିବାକୁ ମନସ୍ଥ କଲେ । ଦିନକର କଥା, ଅଭିମନ୍ୟୁ ତାଙ୍କ ଜମିଦାରୀ କଥା ବୁଝିବାକୁ ଯାଇଥାନ୍ତି । ସାଙ୍ଗରେ ବୁଢ଼ା ବାରିକଟି ଯାଇଥାଏ । ଅଭିମନ୍ୟୁ ତାକୁ କହିଲେ — ତୁ ଦାଉ ଦାଉ ଯାଇ ସାଆନ୍ତାଣୀଙ୍କୁ କହିବୁ — ସାଆନ୍ତଙ୍କୁ ବାଘ ଖାଇଗଲା ।

ବାରିକଟି ଏମିତି ଅମଙ୍ଗଳ କଥା କହିବାକୁ ଆଦୌ ରାଜି ହେଲା ନାହିଁ ।

ଅଭିମନ୍ୟୁ କହିଲେ—ତତେ ଏ କାମ କରିବାକୁ ପଡ଼ିବ ।

ସାଆନ୍ତଙ୍କ ଆଜ୍ଞାକୁ ବାରିକଟି ଅବଜ୍ଞା କରିପାରିଲା ନାହିଁ । ଶେଷରେ ସାଆନ୍ତଙ୍କ କଥାନୁସାରେ ଅଭିନୟ କରିବାକୁ ରାଜି ହେଲା ।

ଅଭିମନ୍ୟୁଙ୍କ ଫେରିବା ବାଟକୁ ବିମଳା ଦେବୀ ଚାହିଁ ରହିଥିଲେ । ଫେରିବାରେ ବିଳମ୍ବ ଘଟୁଥିବାରୁ ସେ ଖୁବ୍ ବ୍ୟସ୍ତ ହୋଇ ତାଙ୍କର ଆସିବା ବାଟକୁ ଚାହିଁ ଦୁଆର ମୁହଁରେ ଛିଡା ହୋଇ ରହିଥିଲେ । ବାଳକଟି ଏକୁଟିଆ ଫେରୁଥିବାର ଦେଖି ସେ ଆତୁର ଚିନ୍ତାରେ ପଡିଗଲେ । ବାଳକ ତ ଆସୁଛି । ସାଆନ୍ତେ ଗଲେ କୁଆଡେ ?



ଅଭିମନ୍ୟୁଙ୍କ କହିବା ପ୍ରକାରେ ବାଳକଟି କାନ୍ଦି କାନ୍ଦି ଆସୁଥିଲା

ବିମଳାଦେବୀ କ୍ଲାନ୍ତ ହୋଇ ପଚାରିଲେ — ଆରେ କାନ୍ଦୁଛୁ ! କାହିଁକି ? ସାଆନ୍ତେ ଗଲେ କୁଆଡେ ?

ବାଳକଟି ସେମିତି କାନ୍ଦି କାନ୍ଦି କହିଲା — ସାଆନ୍ତଙ୍କୁ ବାଘ ଖାଇଗଲା ।

ବାପ୍, ସେତିକି ଯଥେଷ୍ଟ । ଏଇ ପଦେ କଥା ଶୁଣୁ ଶୁଣୁ ବିମଳା ଦେବୀଙ୍କ ପ୍ରାଣବାୟୁ ଉଡ଼ିଗଲା ।

କୌତୁକର ହାସ୍ୟ କି ବିଷମ ପରିଣତି ! କବିଙ୍କୁ ଊନବିଂଶ ବର୍ଷ ବୟସ ହୋଇଥିବାବେଳେ କବିଙ୍କର ପିତା ଇନ୍ଦ୍ରଜିତଙ୍କର ଦେହାନ୍ତ ହୋଇଥିଲା । ବିମଳା ଦେବୀଙ୍କ ତିରୋଧାନ ବେଳକୁ କବିଙ୍କୁ ମାତ୍ର ୪୨ ବର୍ଷ ବୟସ ହୋଇଥିଲା । ଏଭଳି ଅବସ୍ଥାରେ କବିଙ୍କ ମନ କିଣ ହୋଇଥିବ ତାହା ସହଜେ ଅନୁମେୟ ।

କୌତୁକ ପରୀକ୍ଷାର ଏଇ ବିଷମୟ ପରିଣତି କବିଙ୍କୁ ନାନା ମାନସିକ ଦୁଃଖଗ୍ଲାନି ଭିତରକୁ ଟାଣିନେଲା । ସଂସାର ପ୍ରତି ବିରାଗ ଆସିଲା । ସାନଭାଇ ସୁରଥ ଉପରେ ଜମିଦାରୀ ଭାର ଅର୍ପଣ କରି କବି ଉଦାସୀନ ଜୀବନ ଯାପନ କଲେ ।

କବିଥିଲେ ରାଧାକୃଷ୍ଣଙ୍କର ପରମ ଭକ୍ତ । ନିଜ ଉଆସ ପାଟରେ ସେ ରାଧାମୋହନ ମନ୍ଦିର ସ୍ଥାପନ କରିଥିଲେ । କୁହାଯାଏ, ସେ ତାଙ୍କ ଜମିଦାରୀକୁ ରାଧାମୋହନଙ୍କ ନାମରେ ନାମିତ କରିଥିଲେ । କେବଳ ସେତିକି ନୁହେଁ ସେ ବାଲିଆରେ ଏକ ବୃନ୍ଦାବନର ପରିକଳ୍ପନା କରିଥିଲେ । ଏହା ରାଧାକୃଷ୍ଣଙ୍କ ଲୀଳାସ୍ଥଳୀ ବୃନ୍ଦାବନର ଅନୁରୂପ ହୋଇଥିଲା ।

ରୂପ ଗୋସ୍ୱାମୀ ତାଙ୍କର ଲଳିତ ମାଧବ ନାଟକରେ ଏହି ବୃନ୍ଦାବନର ଚିତ୍ର ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ବୃନ୍ଦାବନ ସଂପର୍କରେ ସେ କହିଛନ୍ତି — ଭୂମି ମଧ୍ୟରେ ଭାରତ ଉତ୍ତମ, ସେଇ ଭାରତରେ ବୃନ୍ଦାବନ ଶ୍ରେଷ୍ଠ ଓ ସେଇ ବୃନ୍ଦାବନର ରାସସ୍ଥଳୀ ହେଉଛି ଶ୍ରେଷ୍ଠତମ । କାରଣ ସେଠାରେ ଗୋପୀକାନ୍ତ ଶ୍ରୀକୃଷ୍ଣଙ୍କ ପଦରେଣୁକୁ ନାରଦ ମଧ୍ୟ ପୂଜା କରନ୍ତି । ଏଣୁ ଏହି ବୃନ୍ଦାବନର ସବୁ କିଛି ଦ୍ରବ୍ୟ, ସବୁ କିଛି ପବିତ୍ର । ଏହି ବୃନ୍ଦାବନର ଧୂଳି କଣିକାର ସ୍ପର୍ଶ ପାଇଁ ବିଧାତା ମଧ୍ୟ ଗୁଳ୍ମ ହେବାକୁ ଇଚ୍ଛା କରନ୍ତି । ଅଭିମନ୍ୟୁ ତାଙ୍କର ଶ୍ରେଷ୍ଠ କାବ୍ୟ ବିଦଗ୍ଧ ଚିନ୍ତାମଣିରେ ଏହାର ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

ଦିବ୍ୟ ବୃନ୍ଦାବନ ଆଣି କେ କହିବ ପରିମାଣି
ବିଶେଷ ନାହିଁରେ ତରୁ ସନ୍ତାନ ସମ
ନାହିଁ ଭୂମି ଚିନ୍ତାମଣି କାମଧେନୁ ଧେନୁ ଶ୍ରେଣୀ
ଗୋପାଳ ମହିଁ ଅଖିଳ ନିଧାନ ଶ୍ୟାମ,
ଯେଉଁ ସ୍ଥାନ ଧୂଳି ଲଭନେ
ଗୁଳ୍ମ ହେବାକୁ ବିଧାତା ଭାବନ୍ତି ମନେ ।"

କବି ଅଭିମନ୍ୟୁ ଥିଲେ କାୟ, ମନ, ବାକ୍ୟରେ ବୈଷ୍ଣବ । ପ୍ରତ୍ୟେକ ବୈଷ୍ଣବଙ୍କର ବୃନ୍ଦାବନରେ ବାସ କରିବାର ଲାଳସା ଥାଏ । ଅଭିମନ୍ୟୁ ଶୁଦ୍ଧରାଗାନୁଗା ବୈଷ୍ଣବ ଥିବାରୁ ତାଙ୍କର ମଧ୍ୟ ବୃନ୍ଦାବନରେ ବାସ କରିବାର ଲାଳସା ଥିଲା । ତଥାପି ସେ ତାଙ୍କ ଜନ୍ମଭୂମି ବାଲିଆରେ ଏକ ନବବୃନ୍ଦାବନର ପରିକଳ୍ପନା କରିଥିଲେ ଓ ସେଠାରେ ରାଧା ବିଗ୍ରହ ପ୍ରତିଷ୍ଠା କରିଥିଲେ ।

ବୃନ୍ଦାବନର ବୈଶିଷ୍ଟ୍ୟ ପ୍ରତିପାଦନ କରୁଥିବା ନୈସର୍ଗିକ ସମ୍ପଦମାନ ହେଲା, ଗିରିରାଜ ଗୋବର୍ଦ୍ଧନ, କାଳିନ୍ଦୀ ହ୍ରଦ, କଦମ୍ବ ବନ, ରାଧାକୁଣ୍ଡ, ଶ୍ୟାମ କୁଣ୍ଡ, ଯମୁନା ନଦୀ, ଗୋଚାରଣ ଭୂମି, ବୃନ୍ଦାବନ ରକ୍ଷକ ମହା, ବୀର ହନୁମାନ, ବନଦେବୀ ଯୋଗମାୟା 'କାତ୍ୟାୟିନୀ, ଗୋପେଶ୍ୱର ଶିବ, କୁଞ୍ଜାବଳୀ, ତାଳତମାଳ ବନ, ନନ୍ଦାଳୟ, ବୃଷଭାନୁ ସଦନ, ସ୍ନାନଘାଟ ପ୍ରଭୃତି । ଚୌରାଅଶୀ ପରିମିତ ବ୍ରଜମଣ୍ଡଳରେ ଷୋଡ଼ଶ କୋଶ ହେଉଛି ନିତ୍ୟ ଗୋଲକ ମଣ୍ଡଳ । ଏହି ନିତ୍ୟ ଗୋଲକ ମଣ୍ଡଳରୁ ଚାରିକୋଶ ହେଉଛି ବୃନ୍ଦାବନ । ଏହି ଭୂମି 'ଚିନ୍ତାମଣି ଓ ବୃକ୍ଷରାଜ ହେଉଛି କଳ୍ପତରୁ ଓ ସ୍ୱୟଂ ଶ୍ରୀକୃଷ୍ଣ ହେଉଛନ୍ତି ଏହି ଧାମର ନାୟକ ଓ ରକ୍ଷକ ।

ଏବେ ଅଭିମନ୍ୟୁଙ୍କର କଳ୍ପିତ ବୃନ୍ଦାବନର ଏକ ଚିତ୍ର ଦିଆଗଲେ ଅଭିମନ୍ୟୁଙ୍କର ବୃନ୍ଦାବନରେ ବାସ କରିବାର ଲାଳସା କିପରି ପ୍ରବଳ ଥିଲା ତାହା ସ୍ପଷ୍ଟ ହୋଇଯିବ ।

ବୃନ୍ଦାବନର ଗୋକୁଳ, ଶ୍ୱେତଦ୍ୱୀପ ଓ ବୃନ୍ଦାବନ ଭଳି କଳ୍ପ ଅଭିମନ୍ୟୁ ଗୋଳକୁଣ୍ଡ, ହରିପୁର — ପରମାନନ୍ଦପୁର ଓ ବାଲିଆଳୁ ନେଇ ବାଲିଆ ନଗ୍ର ସ୍ଥାପନା କରିଥିଲେ । ଗୋଳକୁଣ୍ଡରେ ପ୍ରଚୁର ଗୃରଣ ଭୂମି ଥିଲା । ଶ୍ୱେତଦ୍ୱୀପ ବୈକୁଣ୍ଠ ଅନୁକରଣରେ ହରିପୁରଠାରେ ଦଧିବାମନ ମନ୍ଦିର ଓ ବାଲିଆରେ ଚୌରାଅଶୀ ଏକର ପରିମିତ ବ୍ରଜମଣ୍ଡଳ ସର୍ଜନା କରିଥିଲେ । ବ୍ରାହ୍ମଣୀ ନଦୀ ଯମୁନା ନଦୀ ସଦୃଶ୍ୟ ଏଇ କଳ୍ପିତ ବୃନ୍ଦାବନର ସୀମାଦେଇ ପ୍ରବାହିତ ହେଉଥିଲା । ଏହି ଚୌରାଅଶୀ ଏକର ମଧ୍ୟରୁ ଷୋଳ ଏକରରେ ରାଧା ମୋହନଙ୍କ ଲୀଳାଭୂମି ଅବସ୍ଥିତ ଥିଲା । ଦୂର ବହୁଦୂର ପାହାଡ଼ ଗିରି ଗୋବର୍ଦ୍ଧନ ପଦୃଶ୍ୟ ପ୍ରତୀୟମାନ ହେଉଥିଲା ।

ବଜେସ୍ଥଳର ଅନତି ଦୂରରେ ଦକ୍ଷିଣକୁ କାଳିୟଗଣ୍ଡ ସ୍ୱରୂପ ଗଣ୍ଡ ପୋଖରୀ ଥିଲା । ତାର ଉତ୍ତରକୁ ଦୁଇଟି ପୋଖରୀ ଯାହା ରାଧାକୁଣ୍ଡ ଓ ଶ୍ୟାମ କୁଣ୍ଡକୁ ସ୍ମରଣ କରାଇଦିଏ । ଏହା କୂଳରେ କଦମ୍ବ, କେନ୍ଦୁ ଗଛ ଥିଲା । ଏହି ସ୍ଥାନଟି ଘୋର ଅରଣ୍ୟ ଥିଲା ଓ ନାନାବିଧ ବୃକ୍ଷରେ ଏହା ଶୋଭା ପାଉଥିଲା । ରାଧାମୋହନ ମନ୍ଦିରର ପଶ୍ଚିମ ପଟକୁ ଚନ୍ଦନ ପୋଖରୀ ଓ ବସନ୍ତ ଉଦ୍ୟାନ ଥିଲା । ଦକ୍ଷିଣକୁ କବଙ୍କ ଉଆସ ଥିଲା । ରାଧାମୋହନଙ୍କ ବସନ୍ତ ବିହାର ଏହି ସ୍ଥାନରେ ହେଉଥିଲା । ଅଧୁନା ସ୍ରୋତ ପରିବର୍ତ୍ତନ କରିଥିବା ତତ୍କାଳୀନ ବ୍ରାହ୍ମୀ ବା ବ୍ରାହ୍ମଣୀ ନଦୀର ଦକ୍ଷିଣ ତଟରେ ମାଳତୀ ଛନ୍ଦା, କଦମ୍ବ ଘାଟ, ଲୀଳାବଟ, ସ୍ନାନକୁଠ ପ୍ରଭୃତି ଅବସ୍ଥିତ ଥିଲା । ଏହି ଘାଟରେ ବନଦୁର୍ଗାଙ୍କ ଉପାସନା କରାଯାଏ । ଏଠାରେ ବାଲୁକେଶ୍ୱର ଶିବ ସ୍ଥାପିତ ହୋଇଥିଲେ ।

ଏହି ନଦୀ କୂଳରେ ଘୋଷ ପଲ୍ଲୀ ବା ଗୋପାଳ ପଲ୍ଲୀ ଥିଲା । ଗୋପାଳ ପଲ୍ଲୀ ନିକଟସ୍ଥ ଘାଟର ନାମ ଥିଲା ରାଧିକା ଛନ୍ଦା ।

କିନ୍ତୁ ଦୁଃଖର କଥା ଯେ ଅଭିମନ୍ୟୁଙ୍କର ଏଇ ସ୍ୱପ୍ନକଳ୍ପିତ ସୁରମ୍ୟ ବୃନ୍ଦାବନ ଏବେ ନଷ୍ଟ ବିଧ୍ୱସ୍ତ । ଆମେ ଏବେ ତାଙ୍କ କଳ୍ପିତ ବୃନ୍ଦାବନର ଯତ୍‌କିଞ୍ଚିତ ଯେଉଁ ରୂପରେଖ ଦେଖିବାକୁ ପାଉଁ ତାହା ହୁଏତ ଆଉ ଦଶ ପନ୍ଦରବର୍ଷ ପରେ ଏମିତି ହୋଇ ରହିନଥିବ । ହତଭାଗ୍ୟ ଜାତି, ହତଭାଗ୍ୟ ଦାୟାଦ ଆମେ । ଆମେ ତ କବିଙ୍କ ସ୍ମୃତି ପାଇଁ ବିଶେଷ କିଛି କରିପାରି ନାହୁଁ, କିନ୍ତୁ କବିଙ୍କ ସ୍ୱପ୍ନର ବୃନ୍ଦାବନର ବୃକ୍ଷବଣକୁ ଏବେ ଜାଳେଣୀ କରିବାରେ ବ୍ୟସ୍ତ । ଯେଉଁ ବୃନ୍ଦାବନରେ ପ୍ରତ୍ୟେକ ଗୁଳ୍ମ ଥିଲା କବିଙ୍କ ଦୃଷ୍ଟିରେ ପବିତ୍ର ଓ ଯୋଉଁଠି ଗୁଳ୍ମ ହେବାକୁ ବିଧାତା ଇଚ୍ଛା କରିଥିଲେ, କବିଙ୍କର ସେଇ କଳ୍ପିତ ବୃନ୍ଦାବନ ଆଜ ଆମ ହାତରେ ଧ୍ୱଂସପ୍ରାପ୍ତ ହେବାକୁ ଯାଉଛି । ଆମେ ସ୍ମୃତି ତ ରଖିପାରିଲେ ନାହିଁ, କେବଳ ସ୍ମୃତିର ବିଲୟ କରି ଚାଲିଛୁ ।

କବି ସିନା ନିଜ କଳ୍ପନାରେ ବାଲିଆରେ ବୃନ୍ଦାବନ ସୃଷ୍ଟି କରିଥିଲେ, କିନ୍ତୁ ନିତ୍ୟ ଲୀଳାଭୂମି ବୃନ୍ଦାବନରେ ଶେଷ ନିଃଶ୍ୱାସ ତ୍ୟାଗକରିବାର ଅଭିଳାଷ ତାଙ୍କର ଥିଲା । ସେ ବିଦଗ୍‌ଧ ଚିନ୍ତାମଣିରେ ଲେଖିଥିଲେ :—

ହା ହା ରାଧାକାନ୍ତ କହି
ବ୍ରଜ ଭୂମି ମଧ୍ୟେ ମୁହିଁ,
ତେଜିବି ଏ କଳେବର
ଏହି କୃପା ମାତ୍ର କର ।

କବି ବୃନ୍ଦାବନରେ ଜୀବନର ଅବଶିଷ୍ଟାଂଶ କଟାଇବା ପାଇଁ ବୃନ୍ଦାବନ ଯାତ୍ରାରମ୍ଭ କଲେ । କିନ୍ତୁ ବିଧିର ବିଡ଼ମ୍ବନା । ନିଜଗ୍ରାମ ବାଲିଆଠାରୁ ଏକକୋଶ ଦୂର ହରିପୁର ଗ୍ରାମ ପାଏ ଯାଇଛନ୍ତି ଅବଶ ହୋଇ ପଡ଼ିଲେ । ସେ ଜାଣିପାରିଲେ ଯେ ତାଙ୍କର ଶେଷକାଳ ଚାଲି ଆସୁଛି, ସେ ଆଉ ବୃନ୍ଦାବନ ଯାଇ ପାରିବେ ନାହିଁ । ଏଣୁ ତାଙ୍କ ଇଚ୍ଛା ପ୍ରକାରେ ରାଧା ମୋହନବିଗ୍ରହ ସେଠାକୁ ନିଆଗଲା । ସେଇ ଯୁଗଳ ମୂର୍ତ୍ତି ଦର୍ଶନ କରୁ କରୁ କବି ଅଭିମନ୍ୟୁ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ରାଧାମୋହନଙ୍କର ଅପାର କୃପା ଭକ୍ତ ପ୍ରତି । ସେ'ତ ସବୁବେଳେ ଭକ୍ତର ପାଖେ ପାଖେ ଥିଲେ । ଅଭିମନ୍ୟୁ ତାଙ୍କ ଶେଷକାଳରେ ଜାଣି ବୁଝି-ପାରିଲେ ନାହିଁ ଯେ, ତାଙ୍କର କଳ୍ପିତ ବୃନ୍ଦାବନରେ ରାଧା-ମାଧବ ସଦା ବିରାଜମାନ, ସୁଦୂର ବୃନ୍ଦାବନରେ ନୁହେଁ ।



କବି ଅଭିମନ୍ୟୁ ୧୨୧୩ ସାଲ ଜ୍ୟେଷ୍ଠମାସ କୃଷ୍ଣପକ୍ଷ ସପ୍ତମୀ ତିଥିରେ ଇହଲୀଳା ସମ୍ବରଣ କରିଥିଲେ । ଏହି ଦିନଟି ଥିଲା ୧୮୦୬ ଖ୍ରୀଷ୍ଟାବ୍ଦ ଜୁନ୍‌ମାସ ଆଠ ତାରିଖ ମଙ୍ଗଳବାର ।

## କବିଙ୍କ ସମୟରେ ସାମାଜିକ ଓ ରାଜନୈତିକ ଅବସ୍ଥା :

ପ୍ରତାପରୁଦ୍ରଙ୍କ ସମୟରେ ଓଡ଼ିଶା ଉପରେ ପଠାଣମାନଙ୍କର ଆକ୍ରମଣ ହେଲା । ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ତାର ସ୍ୱାଧୀନତା ହରାଇ

କରିଲା । ୧୫୬୮ ଖ୍ରୀଷ୍ଟାବ୍ଦରୁ ୧୫୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଅଫଗାନ ରାଜତ୍ୱ ଅଧୀନରେ ଓ ୧୫୯୨ ରୁ ୧୭୦୭ ଯାଏ ମୋଗଲ ସାମ୍ରାଜ୍ୟ ଅଧୀନରେ ରହି ଓଡ଼ିଶା ଶାସିତ ହେଲା । ଭୋଇ ବଂଶର ରାଜା ବୀରକିଶୋର ଦେବ ହେବାର କିଛିକାଳ ପରେ ୧୭୫୧ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନେ ଓଡ଼ିଶା ଅଧିକାର କଲେ । ମରହଟ୍ଟାମାନେ ହିନ୍ଦୁ ହୋଇଥିବାରୁ ଓଡ଼ିଶାର ରାଜନୈତିକ ସ୍ଥିତି ଯାହା ହେଉନା କାହିଁକି ଓଡ଼ିଶାର ଆରାଧ୍ୟ ଦେବ ଶ୍ରୀ ଜଗନ୍ନାଥ ବିଧର୍ମୀମାନଙ୍କ ଅତ୍ୟାଚାରରୁ ବର୍ତ୍ତିଗଲେ ।

ମରହଟ୍ଟା ଶାସନର କେନ୍ଦ୍ରବିନ୍ଦୁ ନାଗପୁର ଥିବାରୁ ଓଡ଼ିଶାରେ ମରହଟ୍ଟା ଶାସନ ବ୍ୟବସ୍ଥା ସୁଦୃଢ଼ ନଥିଲା । ଏଣୁ ଏହି ସମୟରେ ଦେଶୀୟ ରାଜାମାନଙ୍କ ମଧ୍ୟରେ ଅନ୍ତଃର୍ବିବାଦ, ବିଶୃଙ୍ଖଳା ଓ ଅରାଜକତା ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚି ଥିଲା ।



ମରହଟ୍ଟା ରାଜତ୍ୱ କାଳରେ ଓଡ଼ିଶା ଗଡ଼ଜାତ ଓ ମୋଗଲବନ୍ଦୀ ଭାବେ ଦୁଇ ଭାଗରେ ବିଭକ୍ତ ହୋଇ ଶାସିତ ହେଉଥିଲା । ଗଡ଼ଜାତର

ପ୍ରଜାମାନେ ଦେଶୀୟ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲେ । ଏହି ରାଜାମାନେ ମରହଟ୍ଟାମାନଙ୍କୁ ବାର୍ଷିକ ସଲମି ଦେଉଥିଲେ । ଏଣୁ ସେମାନେ ପ୍ରଜାମାନଙ୍କୁ ଯେଉଁଳି ଅତ୍ୟାଚରିତ ଓ ପ୍ରପୀଡ଼ିତ କରୁଥିଲେ ମଧ୍ୟ ସେଥିରେ ମରହଟ୍ଟାମାନେ ହସ୍ତକ୍ଷେପ କରୁ ନଥିଲେ । ଫଳରେ ଗଡ଼ଜାତ ପ୍ରଜାମାନଙ୍କର ଦୁଃଖ କହିଲେ ସରୁ ନଥିଲା । କିନ୍ତୁ ମୋଗଲବନ୍ଦୀ ଅବସ୍ଥା ଭିନ୍ନ ଥିଲା । ମରହଟ୍ଟାମାନଙ୍କ ଦ୍ୱାରା ନିଯୁକ୍ତ ଜମିଦାରମାନେ ମୋଗଲବନ୍ଦୀ ପ୍ରଜାଙ୍କ ଠାରୁ ରାଜସ୍ୱ ଆଦାୟ କରୁଥିଲେ । ପ୍ରଜାମାନଙ୍କର ସୁଖ ଶାନ୍ତି ଓ ପ୍ରଗତି ପ୍ରତି ଉପଯୁକ୍ତ ଦୃଷ୍ଟି ଦେବାପାଇଁ ସେମାନଙ୍କୁ ମରହଟ୍ଟାମାନଙ୍କର ନିର୍ଦ୍ଦେଶ ଥିଲା । ଯଦି କୌଣସି ଜମିଦାର ପ୍ରଜାପୀଡ଼ନ କରୁଥିଲା, ତା'ହେଲେ ଦଣ୍ଡିତ ଓ ବହିଷ୍କୃତ ହେଉଥିଲା ।

ଆମର ବରେଣ୍ୟ କବି ଅଭିମନ୍ୟୁ ସାମନ୍ତସିଂହାର ବାଲିଆର ଜମିଦାର ଥିଲେ । ବାଲିଆ ମୋଗଲବନ୍ଦୀ ଅନ୍ତର୍ଗତ ଏକ ଜମିଦାରୀ ଥିଲା । କବି ଅଭିମନ୍ୟୁ ଓ ତାଙ୍କର ବଂଶଧରମାନଙ୍କ ସୁଖ ସୁବିଧା ପ୍ରତି ସର୍ବଦା ସଚେତନ ରହୁଥିବାରୁ ସେମାନଙ୍କ ପ୍ରତି ପ୍ରଜାମାନଙ୍କ ସ୍ୱତନ୍ତ୍ର ଭକ୍ତି, ସ୍ନେହ ଓ ଅନୁରାଗ ଥିଲା ।

ଅଭିମନ୍ୟୁଙ୍କ ଆବିର୍ଭାବ ଓ ସାଧନାର କାଳ ହେଉଛି ରୀତିଯୁଗର ଉତ୍କର୍ଷ ଅର୍ଥାତ୍ ରୀତିକାବ୍ୟ ରଚନାର ଚୂଡ଼ାନ୍ତ ପର୍ବ । ରୀତିଯୁଗର ଆଦର୍ଶ ହେଲା— କାବ୍ୟ ଶୃଙ୍ଗାର ରସାଶ୍ରୟୀ ହେବ । କାବ୍ୟ ଶୃଙ୍ଗାର ରସାଶ୍ରୟୀ ହେଲେ କାବ୍ୟ ଜଗତ ରସମୟ ହେବ । କିନ୍ତୁ ଏଥିପ୍ରତି ବୀତରାଗ ହେଲେ କାବ୍ୟ ଜଗତ ନୀରସ ହେବ ।

ପୂର୍ବରୁ କୁହାଗଲା ଯେ, କବି ଅଭିମନ୍ୟୁଙ୍କ ସାଧନା ସମୟକୁ ରୀତି ଯୁଗର ଉତ୍କର୍ଷ ଗୃହ ଆସିଥାଏ । ଏଣୁ କବିଙ୍କ ସମୟକୁ ପାଣ୍ଡିତ୍ୟ, ଆଡ଼ମ୍ବରପୂର୍ଣ୍ଣ ଭାଷା, ଭାବ ସମ୍ବଳିତ କାବ୍ୟସମୂହ ରାଜଦରବାର ଓ ସଂଭ୍ରାନ୍ତ ବ୍ୟକ୍ତିମାନଙ୍କ ଚର୍ଚ୍ଚା ଓ ଆଦୃତିର ପାହାଚ ଅତିକ୍ରମ କରି

ସାଧାରଣ ଜନମାନସକୁ ସ୍ପର୍ଶ କରିପାରିଥାଏ । ଭକ୍ତିଯୁଗର କାବ୍ୟାଦର୍ଶକୁ ନେଇ ଯୁଗର ଅନ୍ୟତମ ପ୍ରଥିତଯଶା କବି ଅଭିମନ୍ୟୁ ତାଙ୍କର ବୈଷ୍ଣବୀୟ ପ୍ରେମତତ୍ତ୍ୱ ଓ ଧର୍ମଦର୍ଶନ ସମ୍ବଳିତ କାବ୍ୟସମୂହରେ ମଧ୍ୟ ପ୍ରତିଫଳିତ କରିଛନ୍ତି । ସେ ତାଙ୍କର ଦୀକ୍ଷା ଓ ଶିକ୍ଷା ଗୁରୁ କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମଙ୍କ ପ୍ରେରଣାରେ ରାଧା-କୃଷ୍ଣ ପ୍ରୀତି ସମ୍ବଳିତ କାବ୍ୟ ପ୍ରେମ ଚିନ୍ତାମଣି ଓ ବିଦଗ୍ଧ ଚିନ୍ତାମଣି ରଚନା କରିଥିବା ବେଳେ ତାଙ୍କର କାବ୍ୟଗୁରୁ ଉପେନ୍ଦ୍ର ଭଞ୍ଜଙ୍କ ଆଦର୍ଶ ଓ ସୃଷ୍ଟି ପ୍ରତିଭାରେ ଅନେକାଂଶରେ ଉତ୍ସାହିତ ଓ ଅନୁପ୍ରାଣିତ ହୋଇ କେତୋଟି କାଳ୍ପନିକ ଓ ପୌରାଣିକ କାବ୍ୟ ସୃଷ୍ଟି କରିଛନ୍ତି । ଏହିସବୁ କାବ୍ୟ ସମୂହରେ ଉପେନ୍ଦ୍ର ଭଞ୍ଜ ଓ ତତ୍କାଳୀନ କେତେକ ବରିଷ୍ଠ କବିଙ୍କ ପ୍ରଭାବ ପଡ଼ିଛି ଓ ପଡ଼ିବା ସ୍ୱାଭାବିକ । ଏସବୁ ସତ୍ତ୍ୱେ ସେ ହେଉଛନ୍ତି ଭକ୍ତିଯୁଗର 'ସର୍ବାଧିକ ଦୃଷ୍ଟି ଆକର୍ଷଣକାରୀ କବି ।' ଅଭିମନ୍ୟୁଙ୍କର ଶ୍ରେଷ୍ଠ କାବ୍ୟ ବିଦଗ୍ଧ ଚିନ୍ତାମଣିର ବୈଶିଷ୍ଟ୍ୟ ପ୍ରତିପାଦନ କରିବାକୁ ଯାଇ ଡକ୍ଟର ମାୟାଧର ମାନସିଂହ କହନ୍ତି— ଗଭୀର ମନୋରମ କାରୁଣ୍ୟ ସହିତ ଅପୂର୍ବ ସାଙ୍ଗୀତିକତାର ମିଳନ ଘଟିଛି ଅଭିମନ୍ୟୁଙ୍କ କବିତାରେ । ଏହି ହେତୁ ତାଙ୍କୁ ଓଡ଼ିଆ ସାହିତ୍ୟର ସୁଇନ୍‌ବର୍ଗ କହିବା ହିଁ ଏକ ଯଥାର୍ଥ ହେବ । ସାମନ୍ତସିଂହାର ରଚନାର ସୁନ୍ଦରତମ, ମନୋହରତମ ଅଂଶ ସବୁ ଓଡ଼ିଆ ଭାଷାର ସ୍ୱକୀୟ ଇଡ଼ିୟମ (ବିଶିଷ୍ଟ ପ୍ରୟୋଗ) ସହିତ ଏପରି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଯେ କୌଣସି ଅନୁବାଦ ଦେଇ ସେସବୁକୁ ଉପଭୋଗ କରାଯାଇ ନପାରେ । × × × ପ୍ରତ୍ୟେକ ଭାରତୀୟ ଭାଷାର ବୈଷ୍ଣବ କବିତାବଳୀର ଭାବରାଜି ଏକା । କିନ୍ତୁ ଓଡ଼ିଆ ଭାଷାର ଅବହେଳିତ ଉପାଦାନମାନଙ୍କୁ ନେଇ ସାମନ୍ତସିଂହାର ସେହି ପରିଚିତ ଭାବମାନଙ୍କୁ ଏପରି ସତ୍ୟ, ସୌନ୍ଦର୍ଯ୍ୟ ଓ ଅମୃତତ୍ୱର ଅପୂର୍ବ ଶ୍ରୀରେ ମଣ୍ଡିତ କରିଛନ୍ତି ଯେ, ଦୈନ୍ଦତାଗି ସାଧାରଣ ଓଡ଼ିଆର କଥିତ ଭାଷା ଭିତରେ ଅନୁପ୍ରବିଷ୍ଟ କରାଇ ଶ୍ରୋତା ପାଠକର ହୃଦୟକୁ ଉଷ୍ମ ମଥିତ କରିପାରିଛି । ଓଡ଼ିଆ ଭାଷାକୁ ସେ ପୃଥିବୀର ଯେ କୌଣସି ଭାଷା ସହିତ ତୁଳନା ହେବା ଭଳି ସରଳ, କୋମଳ ଓ ତରଳ କରିପାରିଛନ୍ତି । ସାମନ୍ତସିଂହାରଙ୍କର ସେହି ଅପୂର୍ବ ଶିଳ୍ପ ପ୍ରତିଭା ପ୍ରତି

ଯେକୌଣସି ପାଠକ ସଶ୍ରଦ୍ଧ ହୋଇ ଉଠିବେ । ଡକ୍ଟର ବାସୁଦେବ ସାହୁଙ୍କ ମତରେ— ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟକ ପରମ୍ପରାର ଜଣେ ଶିଷ୍ୟ ଓ ଉତ୍ତର ଦାୟାଦ ଭାବରେ ନମ୍ରତା ପ୍ରକାଶ କରିଥିଲେ ହେଁ 'ଘୋଡ଼ ସେ ବେଣ୍ଠା ଯୋଦ୍ଧା ନୀତିରେ ସେ ଅନେକସ୍ଥ ଉପେନ୍ଦ୍ର ଭଞ୍ଜଙ୍କୁ ଅତିକ୍ରମ କରି-



ଯାଇଛନ୍ତି । ଲାଳିତ୍ୟ, ଉପମା ଓ ଅର୍ଥ ଗୌରବ ଅର୍ଥାତ୍ ହୃଦ୍ୟତା, ଅନବଦ୍ୟତା ଓ ଅନୁଭବ୍ୟତା କାବ୍ୟର ଯେଉଁ ତ୍ରିବେଣୀ ସଂଗମ କାବ୍ୟକୁ ପବିତ୍ର ପ୍ରୟାଗରେ ପରିଣତ କରେ, ତାହା ରହିଛି ଅଭିମନ୍ୟୁଙ୍କ ପ୍ରତିଭା ଭିତରେ । ଭଞ୍ଜୀୟ କାବ୍ୟ ପରମ୍ପରାର କେବଳ ଉତ୍ତରଦାୟାଦ ନୁହନ୍ତି ଉତ୍ତମ ଦାୟାଦ ଭାବରେ ଅଭିମନ୍ୟୁ ଅଭିନନ୍ଦନର ପାତ୍ର ।

## କବି ପ୍ରତିଭାର ଆଦ୍ୟ ଝଂକାର :

ଭୂକମ୍ପ ଦୁର୍ଘ ପଥରୁ ବାହିରିବା ପରେ ଅଭିମନ୍ୟୁଙ୍କ ପ୍ରତିଭା କବିରୂପେ ପ୍ରତିଷ୍ଠିତ ହେବାକୁ ଆରମ୍ଭ କରିଥିଲା କବିଙ୍କୁ ଯେତେବେଳେ ନଅବର୍ଷ ବୟସ ହୋଇଥିଲା କୁହାଯାଏ କବି ନଅବର୍ଷ ବୟସରେ 'ମୋର ହୁଁ ଗୋ ଗୀତ, ବାଘ ଗୀତ ଓ ଚଉତିଶା ଗୀତ ରଚନା କରିଥିଲେ । ଏହି ଗୀତଗୁଡ଼ିକରେ କବି ହୃଦୟର ସ୍ୱତଃସ୍ଫୂର୍ତ୍ତ ଆବେଗମୟ ଅଭିବ୍ୟକ୍ତି ବେଶ୍ ସ୍ପଷ୍ଟ ଭାବେ ପ୍ରତିଫଳିତ ହୋଇଅଛି ।

'ମୋର ହୁଁ ଗୋ' ଗୀତଟିକୁ କବିଙ୍କର ସର୍ବପ୍ରଥମ କବିତା ଭାବରେ ଗ୍ରହଣ କରାଯାଇପାରେ । ଏହାକୁ କବି ଚଉତିଶା ଶୈଳୀରେ ଲେଖିଥିଲେ । ଭାଷା ଓ ଭାବ ବେଶ୍ ସରଳ, ସାବଲୀଳ । କବି ଗୋଟିଏ ଗୋଟିଏ ବର୍ଣ୍ଣକୁ ନେଇ ଏ କବିତାରୁ ଗୋଟିଏ ଗୋଟିଏ ପଦ ରଚନା କରିଥିଲେ । ଯଥା:—

କରମଙ୍ଗା ଗଛ ଗୁଇ ଗୋ
ମୋର ହୁଁ ଗୋ,
କରମ ଯାହାର ସଫଳ ହୋଇବ
କୃଷ୍ଣଙ୍କୁ ଲଭିବ ସେଇ ଗୋ, ମୋର ହୁଁ ଗୋ ।୧।

× × ×

ଗଞ୍ଜେଇ ଗଛର ଗୁଇ ଗୋ
ମୋର ହୁଁ ଗୋ,
ଗରବ ଗଞ୍ଜନ ଭାବ ବନୋଦିଆ
ଗରବ ରଖନ୍ତି ନାହିଁ ଗୋ, ମୋର ହୁଁ ଗୋ ।୩।

× × ×

ତମାଳ ଗଛର ଗୁଇ ଗୋ
ମୋର ହୁଁ ଗୋ
ତମାଳ ମୂଳିଆ ନିପଟ କାଳିଆ
ଡାକିଲେ ଶୁଣଇ ନାହିଁ ଗୋ, ମୋର ହୁଁ ଗୋ ।୧୬।

ବାଇଗଣ ଗଛ ମୂଳ ଗୋ
ମୋର ହୁଁ ଗୋ,
ବାଇଗଣ ଗଛ ଝାମ୍ପୁରୁ ଝୁମ୍ପୁରୁ
ଶ୍ରୀକୃଷ୍ଣ ଖେଳନ୍ତି ନାହିଁ ଗୋ, ମୋର ହୁଁ ଗୋ ।୨୦।

× × ×

ଝଙ୍କଡ଼ା ଗଛର ମୂଳ ଗୋ
ମୋର ହୁଁ ଗୋ
ହଳଦିଆ ଲୁଗା କୁଞ୍ଚ ରଖିଥିଲା
ଶ୍ରୀକୃଷ୍ଣ ପିନ୍ଧିବା ପାଇଁ ଗୋ, ମୋର ହୁଁ ଗୋ ।୨୩।



କବିଙ୍କର ଏଇ ଆଦ୍ୟ ସୃଷ୍ଟିରୁ କେବଳ ବିଶ ପଦ ମିଳୁଛି । ସମ୍ପୂର୍ଣ୍ଣ ଗୀତଟି ଏ ପର୍ଯ୍ୟନ୍ତ ମିଳିନାହିଁ । ଯେଉଁ ବିଶ ପଦ ମିଳୁଛି ତାହା ମଧ୍ୟ ସମ୍ପୂର୍ଣ୍ଣରେ ମିଳିନାହିଁ ।

## ବାଘ ଗୀତ ଓ ଚଢାଇ ଗୀତ

ବାଘ ଗୀତ ଓ ଚଢ଼ାଇ ଗୀତ ପ୍ରଥମେ ୧୯୩୧ ମସିହାରେ ପ୍ରକାଶିତ ହୋଇଥିଲା । ଏହି ସଂସ୍କରଣର ଭୂମିକାରେ ରାମପ୍ରସାଦ ସିଂହ ଲେଖିଥିଲେ । କବିଙ୍କର କୈଶୋର ଅବସ୍ଥାରେ କବି ହୃଦୟରେ କାବ୍ୟରସ ସ୍ଫୂର୍ତ୍ତି ଆସୁଥିବା ସମୟରେ ବାଲିଆରେ ବାଘ ଶିକାର, ଆଖଡ଼ା ଘରେ ଗୋବରା ଚଢେଇ ପୋଷିବା ନେଇ ଯେଉଁ ସରସ କବିତା ସୃଷ୍ଟି କରିଛନ୍ତି, ସେଥିରେ ସ୍ୱର୍ଗୀୟ ଚିନ୍ତାମଣି ଲେଖକଙ୍କର ସମସ୍ତ ପ୍ରତିଭାର ବୀଜ ଯେ ଅତି ସୁସ୍ପଷ୍ଟ ଭାବରେ ନିହିତ ରହିଛି ଏହା ପାଠକମାନେ ବୁଝି ପାରିବେ—ବୁଝି ମୁଗ୍ଧ ହେବେ । କଳିକାର ପ୍ରଥମ ବିକାଶରେ ପ୍ରସ୍ଫୁଟିତ ଫୁଲର ସୌରଭ ସୌନ୍ଦର୍ଯ୍ୟର ସ୍ୱପ୍ନମୟ ପରିକଳ୍ପନା ଯେପରି ଅତି ନିଶ୍ଚିତ ଭାବେ ନିହିତ ଥାଏ, ଏହି ବହି ଖଣ୍ଡରେ କବି ହୃଦୟର ଗାରିମାମୟ ବିକାଶର ସମସ୍ତ ଲକ୍ଷଣ ସେହିପରି ସୁନ୍ଦର, ସେହିପରି ସତେଜ, ସେହିପରି ସ୍ପଷ୍ଟ ଭାବରେ ନିହିତ । ଏହି ବାଘ ଗୀତ ଓ ଚଢ଼ାଇ ଗୀତ ଅଧ୍ୟୟନ କରି ଡକ୍ଟର ମାୟାଧର ମାନସିଂହ ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ କହିଛନ୍ତି—ଅଭିମନ୍ୟୁଙ୍କ ବାଲ୍ୟ ରଚନାରୁ ଦେଖିଲେ ମନେ ହେଉଛି ଯେ ସେ ଯଦି ବୈଷ୍ଣବ କବି ସଦାନନ୍ଦଙ୍କ ଦ୍ୱାରା ଅଳ୍ପ ବୟସରୁ ପ୍ରଭାବିତ ହୋଇ ପଡ଼ିନଥାନ୍ତେ, ତେବେ ସେ ଓଡ଼ିଆ ସାହିତ୍ୟକୁ ଦୈନନ୍ଦିନ ଜୀବନର ଜୀବନ୍ତ—ସ୍ପର୍ଶ ସ୍ପନ୍ଦିତ ଶବ୍ଦମାନ ଓ ଉତ୍କୃଷ୍ଟ ଅନେକ ରଚନା ଦ୍ୱାରା ସମୃଦ୍ଧ କରି ଯାଇଥାନ୍ତେ ········· କାରଣ ବାଘଗୀତ ଓ ଚଢ଼େଇଗୀତ ଆଦି କବିଙ୍କ ଆଦ୍ୟ ଜୀବନର ଅବୈଷ୍ଣବ ରଚନା ସାମାନ୍ୟ ହେଲେହେଁ ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ ଅସାଧାରଣ ଏବଂ ରୁକ୍ଷ ବାସ୍ତବତା ଓ ଶକ୍ତି ବକ୍ତୃରିକ କର୍ମ ପର୍ଯ୍ୟାୟରେ ଅନ୍ତର୍ଭୂତ ।"

ବାଘ ଗୀତ କୋଡ଼ିଏ ପଦ ବିଶିଷ୍ଟ । ବାଲିଆ ଅଞ୍ଚଳରେ ବାଘ ଉପଦ୍ରବ ଓ ସେହି ବାଘ ଶିକାରକୁ ଉପଜୀବ୍ୟ କରି ବର୍ଣ୍ଣିତ ହେଇ । କବି ଏହି ବାଘଗୀତ ରଚନା କରିବା ବେଳକୁ ତାଙ୍କର ପିତା ଇନ୍ଦ୍ରଜିତ ସାମନ୍ତସିଂହାର ବାଲିଆର ନୃପତି ଥିଲେ । ବାଲିଆ ଚତୁଃପାର୍ଶ୍ୱରେ

ସେତେବେଳେ ଘଂଚ ବନାଗ୍ମ ଥିଲା । ସେଠାରେ ବାଘରହୁଥିଲେ । ସେହି ବାଘ ଉପଦ୍ରବ୍ୟ ନଗରବାସୀଙ୍କ ଧନଜୀବନ ହାନି ହେଉଥିବାରୁ ନଗରବାସୀ ଇନ୍ଦ୍ରଜିତଙ୍କୁ ବାଘ ମାରିବାକୁ ନିବେଦନ କଲେ । ପ୍ରଜାପାଳକ ବୀର ଇନ୍ଦ୍ରଜିତ ବାଘ ଶିକାର ପାଇଁ ନିର୍ଦ୍ଦେଶ ଦେଲେ । ନିଜେ ଇନ୍ଦ୍ରଜିତ ସୈନ୍ୟ ସାମନ୍ତ ସାଙ୍ଗରେ ଧରି ଶିକାର ଉଦ୍ଦେଶ୍ୟରେ ବାହାରିଲେ । ଶିକାର ଆୟୋଜନ ହେଲା । ଚତୁର୍ପାର୍ଶ୍ୱରେ ସୈନ୍ୟମାନଙ୍କୁ ଜଗାଇ ଦିଆଗଲା । ଯେପରିକି ବାଘ କୁଆଡେ ଯାଇ ପାରିବ ନାହିଁ । ଶେଷରେ ବାଘର ସନ୍ଧାନ ମିଳିଲା । ବୈକୁଣ୍ଠଙ୍କ ଗୁଳିରେ ବାଘ ଟଳିପଡ଼ିଲା । ବାଘ ମରିବାପରେ ଗ୍ରାମଦେବୀ ଜାଗୁଳାଇଙ୍କ ମାର୍ଜନା କରାଗଲା ।

ବାଘଶିକାର ପାଇଁ ପ୍ରସ୍ତୁତି ଓ ବାଘଶିକାର ଚମକପ୍ରଦ କବି ମନକୁ ଆନ୍ଦୋଳିତ କରିଥିଲା । ପ୍ରତ୍ୟକ୍ଷ ଦ୍ରଷ୍ଟା ବାଳକ କବି ଅନନ୍ୟ ତାଙ୍କର ସେଇ ଅନୁଭୂତିକୁ ଅତି ନିଖୁଣ ଭାବରେ ଏହି ବାଘଗୀତରେ ବର୍ଣ୍ଣନା କରିଛନ୍ତି । ଏହି ଗୀତଟି ଯେମିତି ସରଳ ଓ ସାବଲୀଳ ସେମିତି ହୃଦୟସ୍ପର୍ଶୀ ଅଥଚ ତତ୍କାଳୀନ କାବ୍ୟ—କବିତା ପରଂପରାର ଏକ ବ୍ୟତିକ୍ରମ ।

**ଚଢ଼ାଇ ଗୀତ :**

ଚଢ଼ାଇ ଗୀତଟି ଚୌଇଶି ପଦ ବିଶିଷ୍ଟ ଏକ ପହେଳୀ । ଏହାକୁ କବି ଆଷାଢ଼ ଶୁକ୍ଳ ବାଣୀରେ ରଚନା କରିଥିଲେ । କବି ବାଲ୍ୟ କାଳରେ ଖେଳ କୌତୁକ ପ୍ରିୟ ଥିଲେ । ତତ୍କାଳୀନ ସମାଜରେ ଚଢ଼େଇ ପାଳିବା ଯେ ଖାଲି ଏକ ବିନୋଦ ଥିଲା ତା' ନୁହେଁ, ସେଇ ଚଢ଼େଇକୁ ଏକ ଲଢୁଆ ଚଢ଼େଇ କରିବାପାଇଁ ସତର୍କତା ଓ ଯତ୍ନର ମଧ୍ୟ ଅଭାବ ନଥିଲା । ସେଥିପାଇଁ ବାଛି ବାଛି ଭଲ ଲକ୍ଷଣଯୁକ୍ତ ଚଢ଼େଇଟିଏ ପାଳିବାକୁ ହେଉଥିଲା । ଏଣୁ କବି ଲେଖିଛନ୍ତି :—

"ଉତ୍ତମ ଲକ୍ଷଣ ଚାହିଁ ରଖିବ
ପୁଅ ପରି କରି ପ୍ରୀତ ପାଳିବ"

ଅପର ପକ୍ଷରେ କବି କେତେକ ଚଢ଼ାଇ ନପାଳିବାକୁ ମଧ୍ୟ କହିଛନ୍ତି । ଯଥା :—

ଲମ୍ବ ନ୍ୟାଡ଼ିଆ ରଙ୍ଗ ପାଟିଆ
ବଢ଼ାମି ଗୋଡ଼ିଆ ସରୁ ଥଣ୍ଟିଆ
ଲଂଜ ବନ୍ଧୁଲିଆ ଡେଣା ପାଟୁଆ
ଭଣ୍ଡି ପାଚିଲିଆ କଳା ବେକିଆ,
ଏମନ୍ତ ଚଢ଼ାଇ
ପୋଷିଥିଲେ ଗୃହେ ଦଶ ଉତ୍ପାତ ।

ମୋଟ ଉପରେ କବିଙ୍କ ବାଲ୍ୟଜୀବନର ସୃଷ୍ଟି ସମୂହ ଥିଲା ଛଳ୍ଳୀ ଭୂସ୍ୱତ, ଛଂଦମୟ, ନବରସମୟ ଓ ବୈଚିତ୍ର୍ୟ ମୟ । ଏହି କବିତା ମାନଙ୍କରେ ବାସ୍ତବତା ଅତି ସୁନ୍ଦର ଭାବରେ ପରିସ୍ଫୁଟ । ଏପ୍ରକାର ବାସ୍ତବ ଚିତ୍ର ତତ୍କାଳୀନ ଅନ୍ୟାନ୍ୟ କବିଙ୍କ ଲେଖାରେ ପ୍ରାୟ ପରିଦୃଷ୍ଟ ହୁଏନାହିଁ ।

କେବଳ ଜଣେ କାବ୍ୟକାର ହିସାବରେ ନୁହନ୍ତି ଜଣେ ସଫଳ ଗୀତିକବି ଭାବରେ ଓଡ଼ିଆ ସାହିତ୍ୟକୁ ଅଭିମନ୍ୟୁଙ୍କର ଦାନ ଅବିସ୍ମରଣୀୟ । କବି ତେରଟି ଭକ୍ତି ଗୀତିକା ରଚନା କରିଥିବା କଥା ଏପର୍ଯ୍ୟନ୍ତ ଆମ ଦୃଷ୍ଟିକୁ ଆସିଛି ଓ ସେଇ ଭଜନ ସମୂହ ମୋ ଦ୍ୱାରା ସଂପାଦିତ ଅଭିମନ୍ୟୁଙ୍କ ଗୀତି କବିତା, ପୁସ୍ତକରେ ସଂକଳିତ ହୋଇଅଛି । ଅଭିମନ୍ୟୁଙ୍କ ରଚିତ ଏଇ ତେରଟି ଭକ୍ତିଗୀତିକା ମଧ୍ୟରୁ ଆଠଟି ଭଜନ ଜଗନ୍ନାଥ ସ୍ତୁତି ମୂଳକ, ଚାରୋଟି କୃଷ୍ଣ ସ୍ତୁତି ମୂଳକ ଓ ଗୋଟିଏ ହରିହର ସ୍ତୁତି ମୂଳକ ।

ତାଙ୍କ ଜଗନ୍ନାଥ ଭଜନ ମଧ୍ୟରୁ ଜୟ ଜୟ ଜଗନ୍ନାଥ ଚଢ଼ି ନନ୍ଦିଘୋଷ ରଥ' ଭଜନଟି ସର୍ବଜନାଦୃତ । ତୁମ୍ଭେ ନ ଜାଣିକି ମୋ'ମନ ଆରତ, ହେ ଜଗନ୍ନାଥ, ଦୁଃଖ ତ ନଗଲା ହନେ ଦୀନ ବଂଧୁ, ଦେଖ ନୀଳଚକ୍ରରେ ବାନା ଉଡ଼ୁଛି, ଜୟ ଜଗବଂଧୁ ଭଜମନ, କୃପାନିଧାନ ହେ

ସେହି ବାଟରେ ମୋର ଜଣାଣ, ଜଗବନ୍ଧୁ ତୁମେ ମୋ ବନ୍ଧୁ ହୋଇଲେ ମୋ' ବନ୍ଧ ହୋଇବ କସ, ଦୟାମୟ କୃପାସିନ୍ଧୁ ପଦେ ଲଗାଇଥିଲ ମଙ୍ଗଳମୟ, ପ୍ରଭୃତି ଜଗନ୍ନାଥ ଜଣାଣ ସେ ରଚନା କରିଥିଲେ ।

ସେହିପରି ତାଙ୍କର କଣ୍ଠୋକ୍ତି ମନ୍ତ୍ରୀ ରାଧା ମୋହନ ହେ, ହେ ରାଧା ମାଧବ ଜଣାଣ ମୁଁ ସେବା ବ୍ରତ, ଧାତ୍ରୀ ଶ୍ରୀଗୋବିନ୍ଦ ହର ଓ ରାଧାମାଧବ ବ୍ରଜ ବାନ୍ଧବ ହେଉଛି ତାଙ୍କର କୃଷ୍ଣଲୀଳାତ୍ମକ ଭଜନ । ସେ ଗୋଟିଏ ମାତ୍ର ହରହର ବନ୍ଦନା ମୂଳକ ଭଜନ ଲେଖିଥିଲେ । ସେହି ଭଜନର ପ୍ରଥମ ପଦ ହେଉଛି :—

ଜୟ ଜୟ ହରହର ମୋର ହର ହର ହେ,
ରକ୍ଷିତ ଶରଣା ଗତ ଆଶ୍ରିତ ଦୀନ ପତିତ-
ଜନର ସୁଖାନନ୍ଦ ଭଣ୍ଡାର ହେ ।

ଏତଦ୍‌ଭିନ୍ନ କବିଙ୍କର ଅନ୍ୟ କୌଣସି ଭଜନ ଏପର୍ଯ୍ୟନ୍ତ ମିଳନାହିଁ । ସଂଖ୍ୟା ଦୃଷ୍ଟିରୁ କମ୍ ହେଲେ ମଧ୍ୟ କବିଙ୍କ ରଚିତ ଏହି ଚେରଟି ମାନ, ତତ୍ତ୍ୱ ଓ ଭାବ ଦୃଷ୍ଟିରୁ ଯେ ଉଚ୍ଚ କୋଟୀର ଏଥିରେ ସନ୍ଦେହର ଅବକାଶ ନାହିଁ ।

## ଚଉପଦୀ :

କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ଦ୍ୱାରା ରଚିତ ୨୫ ଟି ଚଉପଦୀ ଏଯାବତ୍ ପ୍ରକାଶିତ ହୋଇଅଛି । ଓଡ଼ିଆ ସାହିତ୍ୟରେ ୧୭ଶ ଶତାବ୍ଦୀଠାରୁ ଚଉପଦୀ ରଚିତ ହୋଇଆସୁଅଛି । ଚଉପଦୀ ଗୁଡ଼ିକ ମୁଖ୍ୟତ ରାଧାକୃଷ୍ଣ ପ୍ରୀତି ମୂଳକ ଓ ମାନବିକ ପ୍ରୀତି ମୂଳକ । ଅଭିମନ୍ୟୁଙ୍କ ଦ୍ୱାରା ରଚିତ ୨୫ଟି ଚଉପଦୀ ମଧ୍ୟରୁ ଏଗାରଟି ରାଧାକୃଷ୍ଣ ପ୍ରୀତି ମୂଳକ ଓ ଚଉଦଟି ମାନବିକ ପ୍ରୀତି ମୂଳକ । ସରଳ ତରଳ ତଳ ତଳ ଭାଷା ଓ ରସ ଚେତନାରେ ଶୀର୍ଷ ସ୍ଥାନୀୟ ଏହି ଚଉପଦୀ ଗୁଡିକୁ ପାଠକଲେ ଅଭିଭୂତ

ହୋଇପିବାକୁ ପଡ଼େ । ଧନ୍ୟକବି ! ଧନ୍ୟ ତମର ସୃଷ୍ଟି ନୈପୁଣ୍ୟ । କେବଳ ବଇଦେହି ଚିନ୍ତାମଣି କାବ୍ୟରେ ନୁହେଁ, ଗୀତିକବିତା, ବିଶେଷକରି ଚଉପଦୀ ଗୁଡ଼ିକରେ ଚମତ୍କାରିତା ସିଦ୍ଧ କୁଶଳୀ ହସ୍ତର ପରାକାଷ୍ଠା ପ୍ରଦର୍ଶନ କରି ଯାଇଛନ୍ତି ଯାହା ଯେ ଓଡ଼ିଆ ସାହିତ୍ୟ ଗଗନାଙ୍ଗନରେ ଚିର ଉଜ୍ଜ୍ୱଳ୍ୟମାନ ହୋଇ ରହିବ ତା' ନୁହେଁ, ଏହା ଓଡ଼ିଶାର ଅଗଣିତ ଭକ୍ତପ୍ରାଣ ମନକୁ ଚିରଦିନ ପାଇଁ ରସାପ୍ଳୁତ କରି ରଖିବ । କେବଳ ତାଙ୍କର ଲୌକିକ ପ୍ରୀତିମୂଳକ ଚଉପଦୀରେ ନୁହେଁ, ରାଧାକୃଷ୍ଣ ପ୍ରୀତି ମୂଳକ ଚଉପଦୀ ମାନଙ୍କରେ ମଧ୍ୟ କୁଆପି ଅଶ୍ଳୀଳତା ରୂପକ ଅତିରଂଜନ ଦୋଷ ପରିଦୃଷ୍ଟ ହୁଏ ନାହିଁ । ଯାହା ବାସ୍ତବ, ଯାହା ଜନ ଜୀବନର ନିକ୍ଷୁତ ପ୍ରତିଛବି, ତାହା ଅତ୍ୟ ନୂତନ ତାହାହିଁ କବି ଅତି ନିଖୁଣ ଭାବରେ ତାଙ୍କର ଚଉପଦୀ ଗୁଡ଼ିକରେ ବର୍ଣ୍ଣନା କରିଛନ୍ତି ।

**ଚଉତିଶା ।**

କବି ପାଞ୍ଚଟି ଚଉତିଶ ରଚନା କରିଥିଲେ । ସେଗୁଡ଼ିକ ହେଲା— ଦୀନ ଜନ ଚଉତିଶା, କୋକିଳ ଚଉତିଶା, ସଖୀ ଚଉତିଶା, ମୋର ହୁଁ ଦେଗା ଚଉତିଶା ଓ ମଧୁପ ଚଉତିଶା ।

ଦୀନ ଚଉତିଶା ୧୮୮୮ ଖ୍ରୀଷ୍ଟାବ୍ଦରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏହା ଜଗନ୍ନାଥ ବନ୍ଦନାମୂଳକ । ଏହି ଚଉତିଶାଟି ଏଯାବତ୍ ଲୋକମୁଖରେ ଆଦର, ଶ୍ରଦ୍ଧା ଓ ଭକ୍ତିର ସହ ବୋଲାଯାଉଛି । ଏହି ଚଉତିଶାର ପ୍ରଥମ ପଦଟି ଏଠାରେ ଉଦ୍ଧାର କଲେ ପାଠକେ ଏ ଚଉତିଶାର ସାବଲୀଳତା ଲକ୍ଷ୍ୟ କରିପାରିବେ ।

କୃପାସିନ୍ଧୁ ବଦନେନ୍ଦୁ ଶ୍ରୀ ଛାମୁରେ
ଜଣାଉଛି ଅପରାଧ ମୋର
ଖେଦ ଜଳଧିରେ ବୁଡ଼ି ଯାଉଅଛି
ବାହୁ ଧର ହୋଇ ସାବଧାନ
ଆହେ ଗିରିଧର
ଘୋଷଣା ଶୁଭୁଛି ତିନିପୁର
ଉଡ଼ୁଛି କେତନ ପତିତପାବନ
ଶରଣ ରକ୍ଷଣ ବିଶ୍ୱମ୍ଭର ।

ଏହି ଚଉତିଶାରେ ପଦ ପଙ୍କ୍ତିବର୍ଣ୍ଣ ପାଦଗୁଡ଼ିକ ବର୍ଣ୍ଣାନୁକ୍ରମିକ ଗ୍ରନ୍ଥିତ ହୋଇଅଛି ।

କୋକିଳ ଚଉତିଶାଟି ୧୮୯୩ ଖ୍ରୀଷ୍ଟାବ୍ଦରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏହା ଏକ ଲୌକିକ ପ୍ରୀତିମୂଳକ ଚଉତିଶା । ଏହି ଚଉତିଶାରେ ପ୍ରିୟା ବିଦେଶାସ୍ଥିତ ତାର ପ୍ରିୟ ମାଧବକୁ କୋକିଳ ଦ୍ୱାରା ତାର ମନ ବେଦନା ବ୍ୟକ୍ତ କରି ସନ୍ଦେଶ ପଠାଇଛି । ଏଥିରେ ସାତ ସ୍ୱର୍ଗୀୟ ପ୍ରୀତି ବର୍ଣ୍ଣିତ ହୋଇଥିଲେ ହେଁ ସାତିଯୁଗୀୟ ବା ଶବ୍ଦାଡମ୍ବର, ଅର୍ଥଗାମ୍ଭୀର୍ଯ୍ୟକୁ ବର୍ଜନ କରାଯାଇଛି । ଫଳରେ ଏହାର ଭାବ, ମନୋଜ, ଭାଷା ସାବଲୀଳ ଓ ମର୍ମସ୍ପର୍ଶୀ ହୋଇଛି ।

କବିଙ୍କର ଆଉ ଚଉତିଶାରେ ପିତାଙ୍କର ଝିଅକୁ ଆଉ ଉପଦେଶ ବର୍ଣ୍ଣିତ ହୋଇଛି । ମଧୁପ ଚଉତିଶାରେ ଶ୍ରୀକୃଷ୍ଣଙ୍କର ମଧୁପୁର ଗମନ ପରେ ବିରହିଣୀ ଗୋପୀମାନଙ୍କର ମନୋଭାବ ବର୍ଣ୍ଣିତ ହୋଇଛି । ଗୋପୀ-ମାନେ ତାଙ୍କ ମନ ଭାବକୁ ମଧୁପ ଆଗରେ ବ୍ୟକ୍ତ କରିଛନ୍ତି ।

## କାବ୍ୟକାର ଅଭିମନ୍ୟୁ :

ପରମ ଭକ୍ତ ବୈଷ୍ଣବ କବି ଅଭିମନ୍ୟୁ କେବଳ ପ୍ରେମ ଚିନ୍ତାମଣି ଓ ବିଦଗ୍ଧ ଚିନ୍ତାମଣି ପରି ରାଧାକୃଷ୍ଣ ପ୍ରୀତି ମୂଳକ କାବ୍ୟ ଲେଖି ନାହାନ୍ତି ସେ ରସବତୀ ଓ ପ୍ରେମକଳା ପରି ଦୁଇଟି କାଳ୍ପନିକ କାବ୍ୟ ଓ ସୁଲକ୍ଷଣା ଭଳି ଏକ ପୌରାଣିକ କାବ୍ୟ ମଧ୍ୟ ରଚନା କରିଛନ୍ତି । ନିମ୍ନରେ ତାଙ୍କ କାବ୍ୟ—ସମୂହ ଉପରେ ସମ୍ୟକ ଆଲୋଚନା କରାଯାଉଅଛି ।

## ରସବତୀ :

ରସବତୀ କବିଙ୍କର ଏକ କାଳ୍ପନିକ କାବ୍ୟ । ଏହା ୩୨ ଛାନ୍ଦ ବିଶିଷ୍ଟ । ସେ ସମୟର ପରଂପରା ପ୍ରକାରେ କାବ୍ୟ ନାୟକ ବା ନାୟିକାର

ନାମ ଅନୁସାରେ କାବ୍ୟର ନାମ କରଣ କରାଯାଇଥାଏ । ଏଣୁ କବି ଅଭିନବ କାବ୍ୟ ନାୟିକା ରସବତୀର ନାମାନୁସାରେ ଏହି କାବ୍ୟର ନାମ ରସବତୀ ରଖିଛନ୍ତି ।

ସଣକାନ୍ତିରେ ମହାସ୍ଥାନ ରାଜା କୀର୍ତ୍ତିଚନ୍ଦ୍ର ଓ ରାଣୀ ମନୋରମାଙ୍କ ଔରସରୁ ରସବତୀ ଜନ୍ମଲାଭ କରିଥିଲେ । ସେ ଖୁବ୍ ସୁନ୍ଦରୀ ଓ ସର୍ବଗୁଣ ସଂପନ୍ନା ଥିଲେ । ସେ ବିବାହ ଯୋଗ୍ୟା ହେବାରୁ ରାଜା କୀର୍ତ୍ତିଚନ୍ଦ୍ର କନ୍ୟା ସମକକ୍ଷ ପାତ୍ରଟିଏ ଖୋଜି ଖୋଜି ଚିନ୍ତିତ ହୋଇପଡ଼ିଲେ । କନ୍ୟା ସମକକ୍ଷ ପାତ୍ରଟି ପାଇଲେ ନାହିଁ । ରସବତୀ ଏମିତି ସୁନ୍ଦରୀ, ଗୁଣବତୀ ଥିଲେ ଯେ ଦେବତାମାନେ ମଧ୍ୟ ତାଙ୍କର ଉପଯୁକ୍ତ ହେଉ ନଥିଲେ । ରାଜା କୀର୍ତ୍ତିଚନ୍ଦ୍ରଙ୍କ ବିଚାରରେ ପ୍ରତ୍ୟେକ ଦେବତା କିଛି ନା କିଛି ଦୋଷ, ଦୁର୍ଗୁଣର ଅଧିକାରୀ । ଏଣୁ ସେ ସ୍ୱୟମ୍ବର ସଭାର ଆୟୋଜନ କରିବାକୁ ସ୍ଥିର କଲେ । କନ୍ୟା ତାର ନିଜ ଇଚ୍ଛାରେ ପତିବରଣ କରୁ ଏହାହିଁ ରାଜାଙ୍କର ଇଚ୍ଛା ଥିଲା ।

ଦୂତମାନେ ରସବତୀର ଚିତ୍ରପଟ ନେଇ ବିଭିନ୍ନ ଦେଶକୁ ଗଲେ ମାଳବ ଦେଶର ରାଜକୁମାର ସୁଧାକର ରସବତୀର ଚିତ୍ରପଟ ଦେଖି ତାଙ୍କୁ ପତ୍ନୀରୂପେ ପାଇବାକୁ ବ୍ୟାକୁଳ ହୋଇ ପଡ଼ିଲେ ଓ ସ୍ୱୟମ୍ବର ସଭାକୁ ଆଗମନ କଲେ, ସୁଧାକର ମଧ୍ୟ ଅନୁରୂପ ସୁନ୍ଦର, ସ୍ୱାସ୍ଥ୍ୟବାନ ଓ ବୀରଥିଲେ । ସେ ସ୍ୱୟମ୍ବର ସଭାରେ ପ୍ରବେଶ କଲମାତ୍ରେ ତାଙ୍କୁ ଦେଖି ସମାଗତ ରାଜାମାନେ ରସବତୀଙ୍କୁ ପାଇବା ଆଶା ତୁଟାଇ ଦେଲେ ।

ସ୍ୱୟମ୍ବର ସଭାକୁ ଆଗମନ ପାଇଁ ସଖୀମାନେ ରସବତୀଙ୍କୁ ସଜାଇ ଦେଲେ । କବି ରସବତୀର ରୂପ ଓ ଅଳଙ୍କାର ବର୍ଣ୍ଣନା ଅତି ସୁନ୍ଦର-ଭାବରେ କରିଛନ୍ତି । ତାଙ୍କ ରସବତୀ ସଖୀମାନଙ୍କ ସହ ସ୍ୱୟମ୍ବର ସଭାରେ ପ୍ରବେଶ କଲେ । ସଖୀମାନେ ସମବେତ ସବୁ ରାଜାଙ୍କର ପରିଚୟ ରସବତୀକୁ ପ୍ରଦାନ କଲେ । ରସବତୀ ରାଜକୁମାର ସୁଧାକରକୁ ପତିରୂପେ ବରଣ କଲେ ।

ବିବାହ ପରେ ମିଳନ ସଂଘଟିତ ହେଲା । ଏହିକ୍ଷେତ୍ରରେ ଯଦି କାବ୍ୟର ପରିସମାପ୍ତି ହୋଇଥାନ୍ତା ତାହେଲେ କାବ୍ୟଟି ସେତେ ହୃଦୟଗ୍ରାହୀ ହୋଇ ନଥାନ୍ତା । କାରଣ ବିରହ ହିଁ କାବ୍ୟକୁ କରେ ରସାଶ୍ରୟୀ, କାରୁଣ୍ୟଭରା, ହୃଦୟସ୍ପର୍ଶୀ ଓ କବି ଲେଖନୀକୁ କରେ ସାର୍ଥକ । ଏଣୁ ମିଳନ ପରେ ବିରହର ପରିକଳ୍ପନା କବି କାବ୍ୟରେ ଅତି ବାସ୍ତବ ରୂପରେ ଭରିଛନ୍ତି ।

ରମ୍ଭାଙ୍କୁ ପାଇବା ପାଇଁ ଦେବତା ମାନେ ମଧ୍ୟ ବ୍ୟାକୁଳ ଥିଲେ । କିନ୍ତୁ ରସବତୀ ସୁଧାକରଙ୍କୁ ବରଣ କରିବାରୁ ଚନ୍ଦ୍ରସେନ ଈର୍ଷାନ୍ୱିତ ହୋଇ ଶୟନ କକ୍ଷରୁ ସୁଧାକରଙ୍କୁ ହରଣ କରି ନେଇ ଏକ ନିର୍ଜନ ଦ୍ୱୀପରେ ରଖିଦେଲେ । ନିଦ୍ରା ଭଙ୍ଗରେ ରସବତୀ ସୁଧାକରଙ୍କୁ ପାଖରେ ନପାଇ ବହୁତ କାନ୍ଦିଲେ । ବହୁତ ଅନ୍ୱେଷଣ କଲେ କିନ୍ତୁ କେଉଁଠି ପାଇଲେ ନାହିଁ ।

ସୁଧାକରଙ୍କର ମଧ୍ୟ ଅନୁରୂପ ଦଶା ହୋଇଛି । ରସବତୀ ଚିନ୍ତାରେ କ୍ଷୀଣ ହୋଇଛି ଦେହ । ସେ ଦେବତାମାନଙ୍କ ନିକଟରେ ପ୍ରାର୍ଥନା କରିଛନ୍ତି । ଦୈବବାଣୀ ହୋଇଛି ଯେ ବର୍ଷକ ପରେ ଉଭୟଙ୍କର ପୁନର୍ମିଳନ ହେବ । ଏହାର କିଛି ଦିନ ପରେ ବ୍ରହ୍ମାଙ୍କ ହଂସ ଆସି ରାଜକୁମାରଙ୍କୁ ଆଶ୍ୱାସନା ଦେଇଛନ୍ତି ଓ ରାଜକୁମାର ସୁଧାକର ଓ ରସବତୀଙ୍କ ମିଳନ ପ୍ରେମ ମନ୍ଦିରରେ ସହାୟକ ହୋଇଛନ୍ତି । ଶେଷରେ ତାଙ୍କ ନିର୍ଦ୍ଦେଶରେ ଦସ୍ୟୁ ଦୂର ହୋଇ ନିଜ ପିଠିରେ ରାଜକୁମାରଙ୍କୁ ବସାଇ ନେଇ ରସବତୀଙ୍କ ପାଖରେ ପହଂଞ୍ଚାଇ ଦେଇଛନ୍ତି ଓ ଦୁହିଁଙ୍କର ମିଳନ ସଂଘଟିତ ହୋଇଛି ।

ଏହି କାବ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ଓ ଶ୍ରୀହର୍ଷଙ୍କ ନୈଷଧ ଚରିତର ପ୍ରଭାବ ପଡ଼ିଅଛି । ତେବେ ଅଭିମନ୍ୟୁଙ୍କ ଲେଖନୀରେ ଏହି କାବ୍ୟଟି ସରଳ, ସାବଲୀଳ, ହୃଦୟସ୍ପର୍ଶୀ ଓ ବାସ୍ତବ ମୂର୍ତ୍ତୀ ହୋଇ ପାରିଛି ।

## ପ୍ରେମକଳା :

କବିଙ୍କର ଅନ୍ୟ ଏକ କାଳ୍ପନିକ କାବ୍ୟ ହେଉଛି ପ୍ରେମକଳା । ଏହି କାବ୍ୟଟି ଏ ଯାଏ ପ୍ରକାଶିତ ହୋଇନାହିଁ କି ଏହାର ସଂପୂର୍ଣ୍ଣ ପାଣ୍ଡୁଲିପି ଏଯାଏଁ ମିଳିନାହିଁ । କବି ଏହାକୁ ବିଂଶବର୍ଷ ବୟସରେ ଆରମ୍ଭ କରିଥିଲେ ବୋଲି ଗୋଟିଏ ହାତଲେଖା ପାଣ୍ଡୁଲିପିରୁ ମିଳୁଛି । କିନ୍ତୁ ଏହାକୁ ନକଲକାର ପ୍ରମାଦ କହି ଡକ୍ଟର ଆଶୁତୋଷ ପଟ୍ଟନାୟକ ଓ ଡକ୍ଟର ବସୁଦେବ ପାତ୍ର ଏହି କାବ୍ୟକୁ କବି ତ୍ରିଂଶ ବର୍ଷ ବୟସରେ ରଚନା କରିଥିଲେ ବୋଲି ମତ ଦିଅନ୍ତି । କବି ଏହି କାବ୍ୟର ନାୟକ ପ୍ରେମକଳା ନାମାନୁସାରେ ଏ କାବ୍ୟର ନାମ ପ୍ରେମକଳା ରଖିଛନ୍ତି । ଏହି ଗ୍ରନ୍ଥ ସମ୍ପର୍କରେ ସୂଚନା ନିମ୍ନ ପ୍ରକାରେ ଦେଇଛନ୍ତି :

"ଚତୁଷଠୀ ଗ୍ରନ୍ଥରେ ଏ ପ୍ରବନ୍ଧ ହୋଇବ
ଚତୁଷଠୀ କାମକଳା ପୂର୍ଣ୍ଣ ହୋଇଥିବ ।
ଚତୁଷଠୀ ନାୟିକା ନାୟକ ସାଙ୍ଗ ମୀତ
ଯେତେ ସବୁ କଦମ୍ବ, ଲକ୍ଷଣ, ବନ୍ଧ ସ୍ଥିତ
ଚତୁଷଠୀ ରମ୍ୟାଳାପେ ସମଗ୍ର ହଇବ
ଏକ ଶତ ପଦରେ ସେ ରଚିତ ହୋଇବ" ।

କାବ୍ୟଟିର ସଂପୂର୍ଣ୍ଣ ପାଣ୍ଡୁଲିପି ମିଳିନଥିବାରୁ ଏହାର ପୂର୍ଣ୍ଣ କଥାବସ୍ତୁ ଅବତାରଣା କରିବା ସମ୍ଭବ ନୁହେଁ । ତେବେ ଏକ କାଳ୍ପନିକ କଥାବସ୍ତୁକୁ କବି ନିମ୍ନମତେ କାବ୍ୟଟିରେ ଉପସ୍ଥାପିତ କରିଛନ୍ତି ।

ପ୍ରେମିକା ଓ ନାୟିକା ଶ୍ରେଷ୍ଠ ବୃଷଭାନୁ ଜେମା ରାଧା ଥରେ ତାଙ୍କପ୍ରତି କୃଷ୍ଣଙ୍କର ଅନୁରାଗ କେତେ ତାହା ଜାଣିବା ପାଇଁ ମନ ବଳାଇଲେ । ସେ ସ୍ୱକଳାରୁ ଏକ ଅନନ୍ୟା ସୁନ୍ଦରୀ କନ୍ୟା ଜାତ କରାଇ କୃଷ୍ଣଙ୍କର ସେ କନ୍ୟାପ୍ରତି ମନୋଭାବ କଣ ତାହା ପରୀକ୍ଷା କଲେ । କିନ୍ତୁ ଦେଖାଗଲା କୃଷ୍ଣ ସେହି ମନୋଭବା କନ୍ୟାର ରୂପ ଲାବଣ୍ୟରେ ମୁଗ୍ଧ ହୋଇ ଯାଇଛନ୍ତି ।

କୃଷ୍ଣଙ୍କର ଏଇ ଆଚରଣରେ ରାଧା କୁପିତା ହେଲେ । ସେ ତ କୃଷ୍ଣଙ୍କୁ କିଛି କରି ପାରିଲେ ନାହିଁ । ତେଣୁ କନ୍ୟାକୁ ପତିପ୍ରେମ ନମିଳୁ ବୋଲି ଅଭିଶାପ ଦେଲେ ।

ମନୋଭବା ରାଧାଙ୍କ ଶାପରେ ବିଚଳିତା ହେଲେ । ଏହି ଶାପରୁ ମୁକ୍ତିପାଇଁ ରାଧାଙ୍କ ନିକଟରେ ଅନୁନୟ ବିନୟ କଲେ । ରାଧା କହିଲେ, ନାଁ, ତୁ ଏ ଶାପ ଯୋଗ୍ୟା ନୋହୁଁ । ତୁ ମର୍ତ୍ତ୍ୟରେ ଜନ୍ମହୋଇ ପ୍ରେମର ଜୟବାନା ଉଡ଼ାଇବୁ ।

ଏହାପରେ ମନୋଭବା ପ୍ରେମକଳା ହୋଇ ମର୍ତ୍ତ୍ୟରେ ଜନ୍ମ ନେଲେ । ତାଙ୍କର ବୟସ ବୃଦ୍ଧି ପରେ ସେ ନନ୍ଦେଶ୍ୱର ନୃପତିଙ୍କ ପୁତ୍ରକୁ ପତିରୂପ ପାଇବାପାଇଁ ଦୁର୍ଗାଙ୍କୁ ପ୍ରାର୍ଥନା କଲେ । ଦୁର୍ଗା ପ୍ରେମକଳା ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଦୁହିଁଙ୍କ ମିଳନ ପାଇଁ ବରଦାନ କଲେ । ସେମାନଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା ।

କବି ଏହି ପ୍ରେମକଳା କାବ୍ୟକୁ ୭୪ ଛାନ୍ଦ ବିଶିଷ୍ଟ କରିଥିଲେ । କିନ୍ତୁ ଅର୍ଦ୍ଧାଧିକ ଛାନ୍ଦର ପାଣ୍ଡୁଲିପି ଏପର୍ଯ୍ୟନ୍ତ ମିଳିନଥିବାରୁ କବି ଏହି କାବ୍ୟର ପରିସମାପ୍ତି କିପରି କରିଥିବେ ତାହା ଜାଣି ହେଉନାହିଁ । ତେବେ ପାରମ୍ପରିକ ଢଙ୍ଗରେ ସେ ଏହାପରେ ନାୟକ ନାୟିକାଙ୍କର ବିଚ୍ଛେଦ ଓ ବିରହ ଦଶା ବର୍ଣ୍ଣନା କରିବାପରେ ନାୟକ ନାୟିକାଙ୍କର ପୁନର୍ମିଳନ ଘଟାଇଥିବେ ବୋଲି ଅନୁମାନ କରାଯାଇପାରେ ।

## ପୌରାଣିକ କାବ୍ୟ ସୁଲକ୍ଷଣା

କବିଙ୍କର ଏହି ପୌରାଣିକ କାବ୍ୟର ରଚନା ସମ୍ପର୍କରେ ଭିନ୍ନ ଭିନ୍ନ ମତ ଅଛି । ତେବେ ଡକ୍ଟର ବାସୁଦେବ ସାହୁଙ୍କ ଦ୍ୱାରା ନିର୍ଣ୍ଣିତ ରଚନା କାଳ ୧୭୯୫ ଖ୍ରୀଷ୍ଟାବ୍ଦ ଅଧିକ ଯୁକ୍ତିଯୁକ୍ତ ମନେହୁଏ । କବି ତାଙ୍କର

ଶିକ୍ଷାଗ୍ରନ୍ଥ ଓ ପାଷ ଗ୍ରନ୍ଥ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମଙ୍କ 'ପ୍ରେମ କଳ୍ପଲତା' ଆଦର୍ଶରେ ଏହି କାବ୍ୟ ଗ୍ରନ୍ଥ କରିଥିଲେ ବୋଲି କେତେକ ମତ ଦିଅନ୍ତି । ଷୋଳ ଛାନ୍ଦ, ପ୍ରତ୍ୟେକ ଛାନ୍ଦରେ ଷୋଳପଦ ଓ ଷୋଳକଡ଼ି ରାଗରେ ଏହା ରଚିତ ହୋଇଥିଲେ ହେଁ ପ୍ରତ୍ୟେକ ପଦ 'ଘ' ଆଦ୍ୟାକ୍ଷରର ରଚନା ପ୍ରେମ-କଳ୍ପଲତାରେ ସରଳ ଓ ଗଠନ କୌଶଳ ଦୃଷ୍ଟିରୁ ବାକ୍ୟଟି ମଧ୍ୟ ଉଚ୍ଚ-କୋଟିର । ତେବେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ସୁଭଦ୍ରା ପରିଣୟ' କାବ୍ୟର ପ୍ରଭାବ ଏହି କାବ୍ୟ ଉପରେ ପଡ଼ିଥିବାର ଲକ୍ଷ୍ୟ କରାଯାଏ ।

ଏହି କାବ୍ୟର କଥାବସ୍ତୁ ମହାଭାରତରୁ ଆସିଅଛି । ମହାଭାରତରେ ଚନ୍ଦ୍ରାବତୀ ହରଣ ପ୍ରସଙ୍ଗରୁ କବି ଏହି କାବ୍ୟର କଥାବସ୍ତୁକୁ ଆହରଣ କରିଛନ୍ତି । ଦୁର୍ଯ୍ୟୋଧନଙ୍କ ଝିଅ ସୁଲକ୍ଷଣା । ସେ ସୁନ୍ଦରୀ ଓ ସର୍ବଗୁଣ-ସମ୍ପନ୍ନା । ତାର ବିଭାଘର ପାଇଁ ଦୁର୍ଯ୍ୟୋଧନ ଏକ ସ୍ୱୟମ୍ବର ସଭାର ଆୟୋଜନ କଲେ । ଏହି ସମୟରେ ନାରଦ ସେଠାରେ ଉପସ୍ଥିତ ହୋଇ ସଂସାର ସାର ସୁନ୍ଦର କୃଷ୍ଣପୁତ୍ର ବ୍ୟାସଙ୍କୁ ସୁଲକ୍ଷଣା ସହ ବିବାହ କରାଇବା ପାଇଁ ଦୁର୍ଯ୍ୟୋଧନଙ୍କୁ ପରାମର୍ଶ ଦେଇଥିଲେ । ପାଣ୍ଡବଙ୍କ ବନ୍ଧୁ ଓ କୌରବଙ୍କ ଶତ୍ରୁ ଭାବରେ ବିବେଚିତ କୃଷ୍ଣଙ୍କ ପୁତ୍ର ସାଙ୍ଗରେ ସୁଲକ୍ଷଣାକୁ ବିବାହ ଦେବାକୁ ଦୁର୍ଯ୍ୟୋଧନ ଅସମ୍ମତ ହେବାରୁ ନାରଦ ଫେରି ଯାଇଥିଲେ, କିନ୍ତୁ ସୁଲକ୍ଷଣା ନାରଦ ମୁନିଙ୍କୁ ସାକ୍ଷୀ କରି ଶାମ୍ବଙ୍କୁ ବିବାହ କରିବାକୁ ଇଚ୍ଛାପ୍ରକାଶ କରିଛି । ନାରଦ ମୁନି ସୁଲକ୍ଷଣାର ଚିତ୍ରପଟ୍ଟ ନେଇ ଶାମ୍ବକୁ ଦେଖାଇବାରୁ ଶାମ୍ବ ସୁଲକ୍ଷଣାକୁ ପାଇବା ପାଇଁ ବ୍ୟାକୁଳ ହୋଇ ଉଠିଲେ । ନାରଦଙ୍କ ସହାୟତାରେ ଶାମ୍ବ ଆସି ସୁଲକ୍ଷଣାର ଶୟନ କକ୍ଷରେ ପହଂଚିଛନ୍ତି । ଏ ଖବର ପାଇଁ ଦୁର୍ଯ୍ୟୋଧନ ଶାମ୍ବକୁ ବନ୍ଦୀ କରିଛନ୍ତି । ନାରଦ ଏ ସମ୍ବାଦ ପାଣ୍ଡବମାନଙ୍କୁ ଦେଇଛନ୍ତି ଓ ପାଣ୍ଡବମାନେ ଶାମ୍ବଙ୍କୁ ବନ୍ଦୀମୁକ୍ତ କରିଛନ୍ତି । ଶାମ୍ବଙ୍କ ବନ୍ଦୀ ସମ୍ବାଦ ବଳରାମଙ୍କ ପାଖରେ ମଧ୍ୟ ନାରଦ ପହଞ୍ଚାଇ ଦେଇଛନ୍ତି । ବଳରାମ ରାଗରେ ହସ୍ତିନାକୁ ଲଙ୍ଗଳ ମୂନରେ ଟାଣି, ସମୁଦ୍ରରେ ପକାଇ ଦେବାକୁ କହିବାରୁ ଯୁଧିଷ୍ଠିର, ଭୀଷ୍ମ, ଦ୍ରୋଣ, ବିଦୁର ପ୍ରମୁଖ 'ସମୁଦ୍ରେ ନ ପକା ଏଥି ଅଛଇ ଶାସମୃତ' କହନ୍ତେ ବଳରାମଙ୍କ ରାଗ ଶାନ୍ତ ହେଲା । ତା'ପରେ ଶାମ୍ବଙ୍କ ସହ ସୁଲକ୍ଷଣାର ବିବାହ ସମ୍ପନ୍ନ ହେଲା ।

ସୁଲକ୍ଷଣା କାବ୍ୟ ଯେତିକି ଭାବପ୍ରଧାନ ତତୋଧିକ ଶୈଳୀପ୍ରଧାନ ନାନାବିଧ ଅଳଙ୍କାର, ଅନୁପ୍ରାସ, ଯମକରେ ପରିପୂର୍ଣ୍ଣ ଓ କାବ୍ୟ ସ୍ୱର୍ଣ୍ଣଯୁଗର ଏକ ପୂର୍ଣ୍ଣାଙ୍ଗ ମୂର୍ତ୍ତି ।

## ବୈଷ୍ଣବୀୟ କାବ୍ୟ ପ୍ରେମ ଚିନ୍ତାମଣି

କବି ତାଙ୍କର ପ୍ରଥମ ବୈଷ୍ଣବୀୟ କାବ୍ୟ ଓ ପ୍ରେମ ଚିନ୍ତାମଣିକୁ ୨୯ ବର୍ଷ ବୟସରେ ରଚନା କରିଥିବା କଥା ସୂଚନା ଦେଇଛନ୍ତି :—

'ଊନତ୍ରିଂଶ ସମ୍ବତ୍ସର । ଆଙ୍କରୁ ବୟସ ମୋର
ଶ୍ରୀ ବୀରକିଶୋର ଦେବ । ମହାରାଜଙ୍କ ବୈଭବ ।
ଶୁଭ ଚଉଷଠି ଅଙ୍କ । କାର୍ତ୍ତିକ ମାସ ପଞ୍ଚାଙ୍କ ।
ପ୍ରେମେ ହୋଇ ଅନୁରାଗୀ । ସାଧୁଜନଙ୍କ ଆଜ୍ଞା ମାଗି
ଶ୍ରୀ ବୃନ୍ଦାବନ ସ୍ଥାନେ । ଶୁଭ ତ୍ରୟୋଦଶୀ ଦିନେ
କଲି ମୁହିଁ ଆରମ୍ଭ । ଛାଡ଼ି ସବୁ ମାୟା ଦମ୍ଭ ।

ଏହି କାବ୍ୟ ସମାପ୍ତ କରିବାକୁ କବିଙ୍କୁ ଦଶମାସ କାଳ ଲାଗିଥିଲା । ଏହି କାବ୍ୟ ଉପରେ ସଂସ୍କୃତରେ ରଚିତ କୃଷ୍ଣଦାସ କବିରାଜଙ୍କ 'ଗୋବିନ୍ଦ ଲୀଳାମୃତ' ଓ ଯଦୁନନ୍ଦନଙ୍କ ଦ୍ୱାରା ଏହାର ଅନୁବାଦ 'ଗୋବିନ୍ଦ ଲୀଳାମୃତ'ର ପ୍ରଭାବ ଉଲ୍ଲେଖଯୋଗ୍ୟ । ୭ଟି ଛାନ୍ଦ ବିଶିଷ୍ଟ ନିଗୂଢ଼ ବୈଷ୍ଣବ ଧର୍ମ ଓ ପ୍ରେମତତ୍ତ୍ୱ ସମ୍ବଳିତ ଏହା ଏକ ବିରାଟ ଭକ୍ତି କାବ୍ୟ । କାବ୍ୟର ପ୍ରଥମ ଛାନ୍ଦରେ ରାଧା-କୃଷ୍ଣଙ୍କ ବର୍ଣ୍ଣନା ଓ ଗ୍ରନ୍ଥ ସୂଚନା ଦିଆଯାଇଛି । ଦ୍ୱିତୀୟ ଛାନ୍ଦରେ ଶ୍ରୀ ଚୈତନ୍ୟ ଏବଂ ଅନ୍ୟାନ୍ୟ ବୈଷ୍ଣବ ଗୁରୁମାନଙ୍କ ବନ୍ଦନା, ତୃତୀୟ ଛାନ୍ଦରେ ରାଗ ମାର୍ଗର ପ୍ରଶସ୍ତି ଓ ଅଷ୍ଟକାଳ ଲୀଳାର ଅବତାରଣା କରାଯାଇଛି । ଚତୁର୍ଥ ଛାନ୍ଦରେ ରାଧା-କୃଷ୍ଣଙ୍କ ଶାନ୍ତ କେଳି, ପଞ୍ଚମ ଛାନ୍ଦରେ ରଥ ବାହୁଡ଼ା ରାଧାଙ୍କର ପୁର ପ୍ରବେଶ ଓ ଷଷ୍ଠ ଛାନ୍ଦରେ ଯଶୋଦାଙ୍କ ବାତ୍ସଲ୍ୟ ସ୍ନେହର ବର୍ଣ୍ଣନା ଅତି ଚମତ୍କାର ହୋଇଛି ।

ସପ୍ତମ ଛାନ୍ଦରେ ଶ୍ରୀକୃଷ୍ଣଙ୍କ ସଖୀମାନଙ୍କର ପରିହାସ, ଅଷ୍ଟମ ଛାନ୍ଦରେ ପ୍ରାତଃଲୀଳା ଓ ଭୋଜନ ବିଧି ବର୍ଣ୍ଣନା କରାଯାଇଛି । ଏହାପରେ କାଂଶାରୀ ରାଧାଙ୍କ ଅଦର୍ଶନରେ ଶ୍ରୀକୃଷ୍ଣଙ୍କ ମାନସିକ ଅବସ୍ଥା ଓ ରାଧାଙ୍କୁ ଦେଖି ଉତ୍‌ଫୁଲ୍ଲ ଭାବ ବର୍ଣ୍ଣିତ ହୋଇଛି । ସପ୍ତଦଶ ଛାନ୍ଦରେ ରାଧାଙ୍କ ଚିତାଉରେ ଶ୍ରୀକୃଷ୍ଣଙ୍କ ଶଠତା ଧରିବା ରାଧାଂକର ଅନୁରାଗ ବେଶ୍ ସୁନ୍ଦର ହୋଇଛି । ଯଥା—

'ଛାଡନ୍ତୁ ପ୍ରିୟ ବନ୍ଧୁ ଗଂଜନ୍ତୁ ଗୁରୁ
କଳଙ୍କ ଅପବାଦ ଲୋଂଘାରେ ପୂରୁ ଗୋ,
ପଡ଼ିତ ଯାଏ ଅଙ୍ଗେ ଦଣ୍ଡ ମୋ ମନ
କୃଷ୍ଣ ପାଦରୁ ଲେଶେ ନ ଚଳୁ ମନ ଗୋ ।'

୨୫ ରୁ ୨୭ ଛାନ୍ଦ ମଧ୍ୟରେ ରାଧାଂକ ଉତ୍‌କଣ୍ଠା, ଗୋବର୍ଦ୍ଧନ ବର୍ଣ୍ଣନା, ଧନିଷ୍ଠା ଓ ରାଧାଂକର ଉକ୍ତି ପ୍ରତ୍ୟୁକ୍ତି, କୃଷ୍ଣଂକ ବିରହ, ୨୮ଶ ଛାନ୍ଦରେ ରାଧାଂକ ସୂର୍ଯ୍ୟ ପୂଜା, ୨୯-୪୭ ଛାନ୍ଦ ମଧ୍ୟରେ ରାଧା-କୃଷ୍ଣଙ୍କ ସାକ୍ଷାତ, କୁଞ୍ଜ ମିଳନ, ସଖୀ ପରିହାସ, ରାଧାଂକ ମାନ ଓ କୃଷ୍ଣଂକ ଗୃହକୁ ବର୍ଣ୍ଣିତ ହୋଇଛି । ଏହା ପରଠୁ କାବ୍ୟର ସମାପ୍ତି ଯାଏ କୃଷ୍ଣ ଦର୍ଶନ ପାଇଁ ରାଧାଂକ ବ୍ୟାକୁଳତା, ବିଭ୍ରମତା ଓ ସର୍ବଶେଷରେ ମହାଭାବ ପ୍ରକାଶ ପାଇଛି । ତା'ପରେ ଯୁଗଳ ମିଳନ ସଂଘଟିତ ହୋଇ ରାସଲୀଳା ଓ ଭଗବତ୍ ତତ୍ତ୍ୱ, ସୃଷ୍ଟି ତତ୍ତ୍ୱ, ପ୍ରେମତତ୍ତ୍ୱ ଓ ଅଷ୍ଟକାଳ ଲୀଳାକର ମହତ୍ତ୍ୱ ପ୍ରତିପାଦିତ ହୋଇଅଛି । ପ୍ରେମ ଚିନ୍ତାମଣିର ଭାବ, ଭାଷା, ଶୈଳୀ ଓ ବର୍ଣ୍ଣନା ଶୃଙ୍ଖଳା ବିଦଗ୍ଧ ଚିନ୍ତାମଣି ପରି ବଳିଷ୍ଠ ନହେଲେ ହେଁ ଅମ୍ଳାନ ଅଦ୍ୱିତୀୟ କାବ୍ୟ ବିଦଗ୍ଧ ରଚନା ପାଇଁ ଏହା କବିଙ୍କର ପୂର୍ବ ପ୍ରସ୍ତୁତି ବୋଲି ଗ୍ରହଣ କରାଯାଇପାରେ ।

## ବିଦଗ୍ଧ ଚିନ୍ତାମଣି

ବ୍ରହ୍ମ ବୈବର୍ତ୍ତ ପୁରାଣର ଚତୁର୍ଥ ଖଣ୍ଡରେ ବର୍ଣ୍ଣିତ ରାଧା ତତ୍ତ୍ୱ ଓ କୃଷ୍ଣ ତତ୍ତ୍ୱ ଏବଂ ରୂପ ଗୋସ୍ୱାମୀଙ୍କ ବିଦଗ୍ଧ ମାଧବ ନାଟକର କଥାବସ୍ତୁକୁ

ଆଧାର କରି କବି ଅଭିମନ୍ୟୁ ତାଙ୍କର ମହାନ୍ ଭକ୍ତି ପ୍ରୀତି କାବ୍ୟ ବିଦଗ୍ଧ ଚିନ୍ତାମଣି ରଚନା କରିଥିଲେ । କବିଙ୍କର ସ୍ମୃତି, ମତି ଓ ପ୍ରଜ୍ଞା ଏହି କାବ୍ୟକୁ ଅତି ମନୋଜ୍ଞ ଓ ଚିରସ୍ମରଣୀୟ କରିପାରିଛି । ଧର୍ମ, ଅର୍ଥ, କାମ, ମୋକ୍ଷ ଏବଂ କଳାଚାତୁର୍ଯ୍ୟ କାବ୍ୟକୁ ଉତ୍କୃଷ୍ଟ କରିଥାଏ । ବିଦଗ୍ଧ ଚିନ୍ତାମଣିରେ ଏହା ପର୍ଯ୍ୟାପ୍ତ ପରିମାଣରେ ଦେଖାଯାଏ । ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ—ବିଦଗ୍ଧ ଚିନ୍ତାମଣିର ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟ ଏହାର କାବ୍ୟିକ ସୌନ୍ଦର୍ଯ୍ୟକୁ ଅତିକ୍ରମ କରି କେବଳ କାବ୍ୟାମୋଦୀ ପାଠକମାନଙ୍କର ରସ ଚେତନାରେ ନୁହେଁ, ଶ୍ରଦ୍ଧାଭକ୍ତିବାଦୀ ମାନଙ୍କର ଆଧ୍ୟାତ୍ମିକ ଭାବମଣ୍ଡଳରେ ମଧ୍ୟ ଏକ ଅକ୍ଷୟ ଓ ଅମଳିନ ସ୍ଥାନ ଅଧିକାର କରିଅଛି । ବିଦଗ୍ଧ ଚିନ୍ତାମଣିର ଏକ ବିଶେଷତ୍ୱ ଏହିଠାରେ ଯେ ଇତିପୂର୍ବରୁ ଓଡ଼ିଆ କାବ୍ୟରେ ଭାବମୟୀ ରାଧାଙ୍କର ଆବିର୍ଭାବ ଘଟିନଥିଲା । ବିପ୍ରଲମ୍ଭ ଶୃଙ୍ଗାର ଉପରେ ଆଙ୍ଗିକରେ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମଲୀଳାର ବ୍ୟଞ୍ଜନା ବିଦଗ୍ଧ ଚିନ୍ତାମଣି କାବ୍ୟକୁ ସମଗ୍ର ବୈଷ୍ଣବ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ପ୍ରଦାନ କରିଅଛି—ଏଥିରେ ସନ୍ଦେହର ଅବକାଶ ଥାଇ ନପାରେ । ବିଦଗ୍ଧ ଚିନ୍ତାମଣିର ପଦାବଳୀରେ ଦେହ ଦେହାତୀତ ହୋଇ, ରୂପ ରୂପାତୀତ ହୋଇ, କାମ କାମାତୀତ ହୋଇ ଉତ୍କଣ୍ଠିତା ନାୟିକା ଶ୍ରୀରାଧାଙ୍କର ପ୍ରେମକୁ ପ୍ରେମାତୀତ କରିଅଛି ”।

